# କବିତା-୧୯୮୭

ଓଷ୍ଟାର ରଜତ ଜୟନ୍ତୀ କବିତା ପାଠୋତ୍ସବର କବିତାବଳୀ




ପ୍ରକାଶକ :

ଓଡ଼ିଶା ମାଧ୍ୟମିକ ସ୍କୁଲ ଶିକ୍ଷକ ସଂଘ

ନୟାସଡ଼କ, କଟକ-୭୫୩୦୦୨

# କବିତା-୧୯୯୨

ପ୍ରଥମ ପ୍ରକାଶ :

୧୯୯୧

ମୁଦ୍ରକ :

ଓଡ଼ିଶା ପ୍ରେସ,

ନୟାସଡ଼କ, କଟକ-୨

ମୂଲ୍ୟ—ଟ ୧୦.୦୦

(ଦଶଟଙ୍କା ମାତ୍ର)

# ଆମ ଅଭିମତ

ଓଷ୍ଟାର ରୌପ୍ୟ ଜୟନ୍ତୀ ବର୍ଷ ପାଳନ ଅବସରରେ ଗତ ୧୯୮୭ ଡିସେମ୍ବର ୨୫ ତାରିଖ ଦିନ ଶିକ୍ଷକ/ଶିକ୍ଷାକର୍ମୀଙ୍କ ମଧ୍ୟରେ ଥିବା କବି ପ୍ରତିଭାର ସ୍ୱୀକୃତି ନିମନ୍ତେ ଏକ କବିତା ପାଠୋତ୍ସବ କଟକସ୍ଥ କଲିଙ୍ଗ ବ୍ୟାୟାମଶାଳା ଅତିଥି ଭବନରେ ଅନୁଷ୍ଠିତ ହୋଇଥିଲା । ଅଧ୍ୟାପକ ଲକ୍ଷ୍ମୀନାରାୟଣ ରାୟସିଂହଙ୍କ ସଭାପତିତ୍ୱରେ ଓ ଅଧ୍ୟାପକ ଶ୍ରୀନିବାସ ପାଠୀଙ୍କ ସଂଯୋଜନାରେ ଅନୁଷ୍ଠିତ ଏହି କବିତା ପାଠୋତ୍ସବରେ ବହୁ କବି ଓ କବିଯଶପ୍ରାର୍ଥୀ ସ୍ୱରଚିତ କବିତା ପାଠ କରିଥିଲେ । ବହୁ ବିଳମ୍ବରେ ହେଲେ ମଧ୍ୟ ପଠିତ କବିତାଗୁଡ଼ିକୁ ପୂର୍ବ ଘୋଷଣାନୁଯାୟୀ ଏକତ୍ର ସଂକଳନ କରିଅଛୁ ।

"କବିତା-୧୯୮୭" ନାମରେ ପ୍ରକାଶ କରିଥିବା ଏହି ସଂକଳନ ଓଡ଼ିଶାର ଶିକ୍ଷକ/ଶିକ୍ଷ କର୍ମୀ ପାଠକ, ପାଠିକା ତଥା ଓଡ଼ିଆ ଭାଷା ଓ ସାହିତ୍ୟାନୁରାଗୀମାନଙ୍କ ଦ୍ୱାରା ଆଦୃତ ହେଲେ ଆମର ଉଦ୍ଦେଶ୍ୟ ଓ ଶ୍ରମ ସାର୍ଥକ ହେବ ।

ଭବିଷ୍ୟତରେ ଏହିପରି କବିତା ପାଠୋତ୍ସବ ଓ ପଠିତ କବିତାର ସଂକଳନ ପାଇଁ ଆମେ ସିଦ୍ଧାନ୍ତ ନେଇଅଛୁ । ଆମର ଏହି ଉଦ୍ୟମରେ ଏବଂ ଏଇ ପୁସ୍ତକ ପ୍ରକାଶନରେ ଯେଉଁମାନେ ସହଯୋଗ କରିଛନ୍ତି ସେ ସମସ୍ତଙ୍କୁ ଧନ୍ୟବାଦ ଜଣାଉଛୁ ।

**ଶ୍ରୀ କୈଳାସ ଚନ୍ଦ୍ର ମହାପାତ୍ର**

ସାଧାରଣ ସଂପାଦକ

ଓଡ଼ିଶା ମାଧ୍ୟମିକ ସ୍କୁଲ ଶିକ୍ଷକ ସଂଘ (ଓଷ୍ଟା)

# କବିତା-ପାଠୋତ୍ସବ

ଓଡ଼ିଶା ମାଧ୍ୟମିକ ସ୍କୁଲ ଶିକ୍ଷକ ସଙ୍ଘ ପକ୍ଷରୁ ଅନୁଷ୍ଠିତ କବିତା ପାଠୋତ୍ସବ-ଏକ ଅଭିନବ ଉଦ୍ୟମ । ବ୍ରିଟିଶ ସାମ୍ରାଜ୍ୟବାଦର ଶୋଷଣ ଭିତ୍ତିକ କର୍ମ-କୌଶଳର ପରିପ୍ରେକ୍ଷୀରେ ଗଢ଼ିଉଠିଥିବା ସରକାରୀ ଓ ବେସରକାରୀ ଭେଦଭାବ ମିଶ୍ରିତ ଆନୁଷ୍ଠାନିକ ଶିକ୍ଷାକ୍ଷେତ୍ର ଜରିଆରେ ଭାରତର ଶାସନ କରିବା ବ୍ୟବସ୍ଥାରେ ପେଟପାଟଣା ପାଇଁ ସମଗ୍ର ସମୟ ବ୍ୟୟକରି କବିତା ପରି ଏକ ସୂକ୍ଷ୍ମକଳାକୁ ମନପ୍ରାଣରେ ଜାରିତ କରିବା କେବଳ ସେହିପରି ମନନଶୀଳ ବ୍ୟକ୍ତିମାନଙ୍କ ପକ୍ଷରେ ହିଁ ସମ୍ଭବ । ଯେଉଁମାନେ ଶିକ୍ଷାକୁ ଜୀବନ ଜୀବିକାର ବାହନକରି ଆଗାମୀ କାଲିକୁ ଶ୍ରେଣୀଗୃହରେ ଗଢ଼ିଚାଲିଛନ୍ତି, ସେହି କର୍ତ୍ତବ୍ୟନିଷ୍ଠ ସଚ୍ଚୋଟ ମନଦର୍ପଣରେ ଦେଶର ପ୍ରକୃତଛବି ପ୍ରତିଫଳିତ ହୋଇପାରେ—ଏଥିରେ ସନ୍ନିବେଶିତ କବିତାଗୁଡ଼ିକ ସେହି ପରିପ୍ରକାଶକୁ ଧାରଣ କରିଛନ୍ତି ।

ସ୍ୱାଧୀନତାର ପାର୍ଶ୍ୱବିନ ପରେ, ଆଜ ଯେତେବେଳେ ଦୁନିଆ ବ୍ୟାପୀ ସମାନ କାମକୁ ସମାନ ମଜୁରୀ କେବଳ ନୁହେଁ, ସମାଜବାଦର ବିଜୟ ବୈଜୟନ୍ତୀ ଉଡ଼ୁଛି, ସେତିକିବେଳେ ଆମ ଭାରତବର୍ଷ ଅର୍ଥିକ ଅସାମ୍ୟଜନିତ ଯନ୍ତ୍ରଣାରେ ଜର୍ଜରିତ ଫଳଶ୍ରୁତି, ବିଚ୍ଛିନ୍ନତାବାଦ, ଧର୍ମାନ୍ଧତା, କୁସଂସ୍କାର, ଅଶିକ୍ଷା କୁଶିକ୍ଷା ଓ ନିରକ୍ଷରତା ରୂପକ କୁପ୍ରଭାବର ଅନ୍ଧକାର ଆମର ଶିଳ୍ପାକାଶରେ ପରିବ୍ୟାପ୍ତ ହୋଇଥିବାବେଳେ ଏକ ସ୍ୱାଧୀନ ଉନ୍ନତିକାମୀ ଜାତିର ନୂତନ ଭାବମାନସ ପ୍ରତିଫଳିତ ହୋଇଛି ଏହି କବିତାର ଶ୍ରେଷ୍ଠ ପଂକ୍ତିମାଳାରେ ।

କେଉଁ କବିତାଟି କପରି, ଭଲ ବା ମନ୍ଦ—ଏ ବିଚାର ଏଠାରେ ନିରର୍ଥକ । କାରଣ ପୁଷ୍ପ ଉଦ୍ୟାନରେ ବହୁ ପ୍ରକାର ପୁଷ୍ପ-ସମ୍ଭାର ଯେପରି ବିଭିନ୍ନ ରଙ୍ଗ, ରସ ଓ ବାସ୍ନାରେ ସୁଶୋଭିତ ହୋଇଥାଏ, ସେହିପରି ଏ କବିତାଗୁଡ଼ିକ ନିଜସ୍ୱ ଚିନ୍ତା, ଚେତନା ଓ ତାହାର ପରିପ୍ରକାଶ ପାଇଁ ଯେ ଯାହାର ଭାଷାଗତ ମାଧ୍ୟମ ବାଛି ନେଇଛନ୍ତି । ବିଶ୍ୱଶାନ୍ତି, ଜାତୀୟ ସଂହତି ଠାରୁ ଆରମ୍ଭକରି ଜୀବନଜୀବିକାର ଯନ୍ତ୍ରଣା ସହିତ ଯେପରି ପ୍ରତ୍ୟେକଟି କବିତା ସ୍ତବକରେ ଜୀବନ୍ତରୂପ ପରିଗ୍ରହ କରିଛି ।

ଓଷ୍ଟାର ଏହି ପ୍ରୟାସ ଅବ୍ୟାହତ ରହୁ । ବଣ ମଲ୍ଲୀ ପରି ବଣରେ ଝଡ଼ି ନ ଯିବା ପାଇଁ ଏହି କବିତା କାକଳିର ସ୍ରଷ୍ଟାମାନଙ୍କୁ ବର୍ଷରେ ଅନ୍ତତଃ ଥରେ ଏହିପରି ସୁଯୋଗ ଦିଆଯାଉ । ଓଷ୍ଟାର ଏହି କବିତା ପାଠୋତ୍ସବରେ ଯେଉଁମାନେ ଅଂଶ ଗ୍ରହଣ କରିଛନ୍ତି ସେମାନଙ୍କ ମଧ୍ୟରେ ଅନେକ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ କବି ଓ ଲେଖକ ଭାବରେ ପରିଚିତ । କିନ୍ତୁ ଅନ୍ୟ ଯେଉଁମାନେ ସେମାନଙ୍କର ସୁପ୍ତ କବି ପ୍ରତିଭାର ବିକାଶ ପାଇଁ ଏହି ସୁଯୋଗ ଲାଭ କରିଛନ୍ତି, ସେ ସମସ୍ତଙ୍କୁ ଶତ ଧନ୍ୟବାଦ । ଏହିପରି ଏକ କବିତାପାଠୋତ୍ସବରେ ସଭାପତିତ୍ୱ କରିବାର ସୁଯୋଗ ଲାଭ କରି ନିଜକୁ ଧନ୍ୟ ମନେକରୁଛି । ଆଧୁନିକ ବିଶିଷ୍ଟ ତରୁଣ କବି ଅଧ୍ୟାପକ ଶ୍ରୀନିବାସ ପାଠୀ ସଂଯୋଜକ ଭାବରେ ଯୋଗ ଦେଇ କବିତାର ସମୀକ୍ଷାକରି ଦିଗ୍‌ଦର୍ଶନ ଦେଇଛନ୍ତି । ଏହି ଅବସରରେ ତାଙ୍କୁ ଶ୍ରଦ୍ଧା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଓଷ୍ଟାର କର୍ମକର୍ତ୍ତା-ଗଣ ଓଡ଼ିଶାରେ ଓଡ଼ିଆ ସାହିତ୍ୟର ଅଗ୍ରଗତି ଲାଗି ଗ୍ରହଣ କରିଥିବା ପଦକ୍ଷେପକୁ ସାଧୁବାଦ ଜଣାଉଛି ।

**ଲକ୍ଷ୍ମୀନାରାୟଣ ରାୟସିଂହ**
ଅଧ୍ୟାପକ, ଓଡ଼ିଆ ବିଭାଗ
ହିଂଜୁଳିକାଟୁ ମହାବିଦ୍ୟାଳୟ
ଗଂଜାମ



# କବିତା ପାଠୋତ୍ସବ—ଏକ ସମୀକ୍ଷା

● ଅଧ୍ୟାପକ ଶ୍ରୀନିବାସ ପାଠୀ

ଓଡ଼ିଶା ମାଧ୍ୟମିକ ସ୍କୁଲ ଶିକ୍ଷକ ସଂଘ (ଓସ୍ଟା)ର ରଜତ ଜୟନ୍ତୀ ପାଳନ ଅବସରରେ ଡିସେମ୍ବର ୨୫,୧୯୮୭ ଦିନ କଟକର କଳିଙ୍ଗ କମନାସିଆମ ଅତିଥି ଭବନ ଠାରେ ଏକ ସାରସ୍ୱତ କବିତା ପାଠୋତ୍ସବ ଏବଂ କବି ସମ୍ମେଳନ ଅନୁଷ୍ଠିତ ହୋଇଥିଲା । ରାଜ୍ୟର ବିଭିନ୍ନ ହାଇସ୍କୁଲ ଓ ଅନ୍ୟାନ୍ୟ ବିଦ୍ୟାଳୟରୁ ସମାଗତ ବହୁ ଶିକ୍ଷକ ଶିକ୍ଷୟିତ୍ରୀ ସ୍ୱୀୟ କବିତା ଆବୃତ୍ତି କରିଥିଲେ ।

ଅଶୀରୁ ଅଧିକ କବି ଓ କବୟିତ୍ରୀଙ୍କର କବିତା ପାଠ, ପରିବେଷଣ ଶୈଳୀ ଓ ସାଙ୍ଗିତିକତା ପରିବେଶକୁ କରିଥିଲା ରସସିକ୍ତ । ସମସ୍ତ କବିତା ସ୍ୱଗୁଣରେ ଗରୀୟାନ୍ । ମାତ୍ର ଯେଉଁ କେତୋଟି ଲେଖା ଅଧିକ ମୋ ମନକୁ ଛୁଇଁଲା ସେମାନଙ୍କ ସମ୍ପର୍କରେ ପଦେ ଦି'ପଦର ଅବତାରଣା ଏଠାରେ କରାଯାଉଛି । କାହା ଉପରେ ରାୟ ଦେବାର ଉଦ୍ଦେଶ୍ୟ ମୋର ଆଦୌ ନାହିଁ । ଏ ସମସ୍ତର ସମାହାର ତ' ବାଣୀ ବନ୍ଦନା ।

କବିତା ପାଠୋତ୍ସବର ପ୍ରଥମ କବିତା 'ଆକାଙ୍କ୍ଷା' ଆଉ କବୟିତ୍ରୀ ବସନ୍ତ ମଞ୍ଜରୀ ପଟ୍ଟନାୟକ ସେ ହୃଦୀ ଶିକ୍ଷା, ଶିକ୍ଷକ ଓ ସେମାନଙ୍କ ସମସ୍ୟା ବର୍ଣ୍ଣନା କରିଥିଲେ ଗୋକୁଳ ପ୍ରଧାନର କଥା ପ୍ରସଙ୍ଗରେ । ଭ୍ରମରବର ସାମଲଙ୍କର 'ଶିକ୍ଷକ ମୁଁ ଶିକ୍ଷକ' ଏକ ସମ୍ଭ୍ରାମୀୟ ବେଉସା ସପକ୍ଷରେ ଅକାଟ୍ୟ ଯୁକ୍ତି । ମଙ୍ଗଳା ପ୍ରସାଦ ପ୍ରଧାନ 'ଜାଗ ଗୁରୁକୁଳ' ଓ 'ଜଳ ବହର'ର ଆହ୍ୱାନ ଦେବା ସମୟରେ ଈଶ୍ୱରଚନ୍ଦ୍ର ମହାନ୍ତି କୁହନ୍ତି 'ଜଳୁଥିବ ସବୁଜ ପୃଥିବୀ' ।

ରାଜକିଶୋର ହୋତାଙ୍କ "ଭାଗ୍ୟ ହେଉଛି ଭାବନା ଓ ଜ୍ଞାନର ଶୁଭ ବିବାହ" । ଘନଶ୍ୟାମ ପାଣି ଆହ୍ୱାନ କରନ୍ତି ଯେ "ମାନବିକ ମନ୍ତ୍ର ଜପକର ଅମୃତର ସ୍ୱାଦ ଆସ୍ୱାଦନ କର" । ଗୋଲକ ବିହାରୀ ବେହେରା ବିଶ୍ୱଶାନ୍ତି ଓ ବିଶ୍ୱ ପ୍ରୀତିର ବାଣୀ ଉଚ୍ଚାରଣ କରିବା ସମୟରେ ହାଡ଼ିବନ୍ଧୁ ସାହୁ ମୁକ୍ତ ମଶାଲର ପଛଦେଶରେ ଭେଳକି ମନର ଅଭିଶାପ ବର୍ଣ୍ଣାଇଛନ୍ତି । ଗୟାଧର ମାଝିଙ୍କର ଏ ମାଟି ଓ ସେ ମାଟି ପରିପ୍ରେକ୍ଷୀରେ

ସୁଇ ଆଲୁଅ ଏବଂ ଝିଲମିଲ ଆଲୁଅର ପସରା ମଧ୍ୟରେ ଫଜଲ୍ ହକ୍‌ଙ୍କର ଅନାମିକାର ରକ୍ତାକ୍ତ ଦେହ ମନ ଆଖି ଆଗରେ ଭାସିଯାଏ । ଧର୍ମାନନ୍ଦ ଚୌଧୁରୀ 'ସଂଗଠିତ ଅମାନ୍ତ ଅନ୍ୟାୟ' ବିରୁଦ୍ଧରେ ମସୀ ଉତ୍ତୋଳନ କରି ବିଷ୍ଣୁ ଚରଣ ଧଳଙ୍କର "ସେବା ଓ ତ୍ୟାଗ"ର ବାଣୀ କେବଳ ଏକ ସ୍ଲୋଗାନ୍ ବୋଲି ଅଭିହିତ କରନ୍ତି । ଭ୍ରମରବର ବିଶ୍ୱାଳଙ୍କର 'ଏ ଦେଶର ଆଧୁନିକ ଶ୍ୱେତକାୟ ଗୋଷ୍ଠୀ' ବିରୁଦ୍ଧରେ ମାୟାଧର ମାଝି 'ଏକଲବ୍ୟ ମାନଙ୍କୁ' ଜାଗ୍ରତ କରାନ୍ତି । ରମାକାନ୍ତ ମହାନ୍ତଙ୍କ ଭାଷାରେ "ମୁଷ୍ଟି ଓଷ୍ଠା-ମୁଁ ଯେ ଐକ୍ୟର ଶକ୍ତି ଉତ୍ସ" ।

ଦୁର୍ଯ୍ୟୋଧନ ସ୍ୱାଇଁ କୁହନ୍ତି ଯେ "ଯନ୍ତ୍ରଣା ଅନେକ-ଆଶା ଆଞ୍ଜୁଳା ଆଞ୍ଜୁଳା-ହସ ମୁଠାଏ" । ନିରଞ୍ଜନ ସାହୁ "ପ୍ରଗଳ୍‌ଭତା ଏବଂ ପ୍ରବଞ୍ଚନା ବିରୁଦ୍ଧରେ ଲହୁଲୁହର ସଂଗ୍ରାମ" ପାଇଁ ବ୍ୟାକୁଳ ନିବେଦନ କରନ୍ତି । କମଳାକାନ୍ତ ମହାନ୍ତି "ସାମ୍ୟର ତୂର୍ଯ୍ୟନାଦ" ଓ ଜୟପ୍ରକାଶ ମାହାନ୍ତ "ସାମ୍ୟଗାନ"ର ସାଙ୍ଗୀତିକତା ସୃଷ୍ଟି କରିବା ପରେ ବିଭୂତି ସେନାପତି ଜୋର୍ ଦେଇ ଘୋଷଣା କରନ୍ତି ଯେ ବଞ୍ଚିବାର ଦାବି ଆହୁରି ତୀବ୍ର ହୁଏ । ଆଜ ଉମାକାନ୍ତ ମିଶ୍ର ଗତିଶୀଳ ସମୟର ପରିଣତି ସ୍ୱରୂପ ସଭ୍ୟତାର କଫିନ୍ ପ୍ରସ୍ତୁତ କରନ୍ତି ।

କୃଷ୍ଣଚନ୍ଦ୍ର ପଟେଲ "ଦେଖି ନ ଦେଖିଲାଭଳି ଓ ବୁଝି ନ ବୁଝିଲା ପରି' ପ୍ରଶ୍ନ କରନ୍ତି, "ମୁଁ ଶିକ୍ଷକ ନୁହେଁ—ନମ୍ପୁଂସକ କି ମୁଁ ?" ବଂଶୀଧର ଦାଶଙ୍କ କବିତାରେ ସବୁଜ ମାଟି ଓ ସବୁଜ ପତ୍ର ଲୋହିତ ରକ୍ତରେ ରଙ୍ଗୀନ୍ ହୋଇଯାଇଛି । ପ୍ରଭାକର ବେହେରାଙ୍କ ପାଇଁ "ଶିକ୍ଷକ ଜଣେ ଗୋଟି ଶ୍ରମିକ" ହେମନ୍ତ ରାଉତ ଏଥିରେ ଏକମତ ନହୋଇ କୁହନ୍ତି ଯେ ମୁଁ ବିଦ୍ରୋହ-ଅଯୁତ ବର୍ଷର କଙ୍କାଳକୁ ଦେଇପାରେ ମୁଁ ଜୀବନ୍ୟାସ । ଡ଼. ବାସୁଦେବ ଦାସ ଆଫ୍ରିକାର ବୋଥା ସରକାରକୁ ଜୀବନ ବେପାରୀରୂପେ ଦୋଷୀ ସାବ୍ୟସ୍ତ କରନ୍ତି । ଗୌରାଙ୍ଗ ରାଉତ ଲେଖନ୍ତି, "ପେଟ ପାଇଁ/ଓଠ ପାଇଁ ଅହରହ ସଂଗ୍ରାମ"ର ସଙ୍ଗୀତ । ରାମଚନ୍ଦ୍ର ପାକଳ 'ଶାନ୍ତିର କପୋତ' ଓ କୈଳାସ ବେହେରା 'ବିଶ୍ୱାସର ସ୍କାଇଲାବ୍'କୁ ପୃଥିବୀ ବକ୍ଷରେ ଅବତରଣ କରାନ୍ତି ।

ସୁଧାଂଶୁ ବାବୁ "ରକ୍ତରେ ଜୁଡ଼ୁବୁଡ଼ୁ ହୋଇ ଝରାଫୁଲ ସାଉଁଟିବା" ସମୟରେ ମଙ୍ଗୁଳି ବିଶ୍ୱାଳ "ତାଜା ଲହୁରେ ହୋରି"

ଖେଳନ୍ତ । ଶୈଳେଶ ପଟ୍ଟନାୟକ କୁହନ୍ତ, "ମୁଁ ଆଉ କବିତା ଲେଖୁନାହିଁ, ବାରୁଦ ଗୁଣ୍ଡ ଛୁଟୁ ।" ଲକ୍ଷ୍ମୀଧର ଗିରି ପଦେ ଆଗକୁ ଯାଇ କୁହନ୍ତ ଯେ ଚଳ୍ ଭିତରେ ଡ୍ରନାମାଇଟ୍ ଭରିରହିଛି ଯାହାକି ବିମଳା ସିଂହଙ୍କ ଆନ୍ଦୋଳନର ପଦ୍ମପାଖି । କାମଧ୍ୱଜ ମହାରଣା, ବୃନ୍ଦାବନ ସାହୁ ଓ ପ୍ରକାଶ ଚନ୍ଦ୍ର ବଳସ୍ମର ସିଂହ ମହାପାତ୍ର ଆତ୍ମ ପରିଚୟ, ଆତ୍ମ ସମୀକ୍ଷା ଓ ପରିଚୟ ପ୍ରଦାନ କରନ୍ତ ।

ବିବେକାନନ୍ଦ ଦାଶଙ୍କର 'ବିଶ୍ୱବାଣୀ', କବି ରମେଶ ଅଲ୍ଲୀ ବେସାନ୍ତଙ୍କ "ସ୍ୱଦର୍ଶର ସାର୍ଥକତା" ପ୍ରତିପାଦନ କରେ । ଶ୍ୟାମସୁନ୍ଦର ଦାସ ଖୁବ୍ ଚମତ୍କାର ଭାବରେ ବର୍ଣ୍ଣନା କରନ୍ତ ଯେ କାକରରୁ ଝରେ ରକ୍ତ ଆଉ ଫୁଲରୁ ଗରଳ ।

ତଥା ଏମିତି ଆଉ ଆଉ ଅନେକ ଶ୍ରେଷ୍ଠ ବଡ଼ କବିତା । ସାମଗ୍ରିକ ଭାବରେ ଏତିକିମାତ୍ର କୁହାଯାଇପାରେ ଯେ କବିତାଗୁଡ଼ିକର ପ୍ରତିଟି ପଂକ୍ତିରେ ଭରି ରହିଥିଲା ଅଭିଜ୍ଞତା, ଆବେଗ ଓ ଆକାଙ୍କ୍ଷାର ସ୍ପଷ୍ଟ ପ୍ରତିଛବି । ଯୁଦ୍ଧ/ଶାନ୍ତ, ଲୁହ/ଲହୁ, ସ୍ୱପ୍ନ/ବାସ୍ତବତା, ସତ୍ୟ/ମିଥ୍ୟା, ହିଂସା/ପ୍ରେମ, ଅନ୍ଧାର/ଆଲୋକ, ସଂଘର୍ଷ/ସଂହତି, ଦେଶ/ବିଦେଶ, ପୃଥିବୀ/ଆକାଶ, ନମସ୍କ/ନଚିକେତା, ଖଟିଖିଆ/ପୁଞ୍ଜିପତି, ବୋଥା/ନେଲ୍ସନ୍ ମଣ୍ଡେଲା, ଛାତ୍ର/ଶିକ୍ଷକ—ଏ ସମସ୍ତ ଜୀବନ ଯନ୍ତ୍ରଣାର ଭିନ୍ନ ଭିନ୍ନ ଦିଗ ମାତ୍ର । ଆଲୋଚ୍ୟ କବିତାବଳୀର ପ୍ରତିଟି ଶବ୍ଦରେ ଏହା ସ୍ପଷ୍ଟ ପରିଲକ୍ଷିତ ।

ପରିଶେଷରେ, ଶ୍ରେଷ୍ଠ କବିତାଟିଏ—

"ଶୂନ୍ୟତା ଆଙ୍କେ ଅକ୍ଷର
ଅକ୍ଷର ବାନ୍ଧେ ଶବ୍ଦ,
ଶବ୍ଦ ବୁଣେ ଭାଷା
ଭାଷା ଖୋଜେ
ଦରିଆ ମଣିଷର ପ୍ରୀତିର ପରଶ......"

(ନିଜ ରଚନା : ସୌଜନ୍ୟ-ପ୍ରଜାତନ୍ତ୍ର ସାହିତ୍ୟ ବିଭାଗ)

ଓଡ଼ିଶାର ଏହି ଅଭିନବ ସାରସ୍ୱତ କାର୍ଯ୍ୟକ୍ରମର ଆଗାମୀ ଦିନ ଉଜ୍ଜ୍ୱଳତର ହେଉ, ଏହାହିଁ କାମନା ।

# ମୋ ଗାଁ—ମୋ ଦେଶ

● ଭଜହରି ମହାପାତ୍ର

ନିଜକୁ ହଜାଇ ଦେଇ
ସବୁଜିମାର ଶାନ୍ତ ସ୍ୱପ୍ନରେ,
ଶୋଇ ଶୋଇ ସୋରିଷ ଫୁଲର ସୁନା ଶେଯରେ,
ଏ ନିର୍ଲିପ୍ତ ଅହମିକାର ଗୀତି ଗାଇ ଲାଭ ଆଉ କ'ଣ ?

ଆଖିମଳି ଆକାଶକୁ ଚାହିଁ ଥରେ,
ତାରକା ଯୁଦ୍ଧର ଘନ ଘଟାରେ
ବିକ୍ଷୁବ୍ଧ ମହାକାଶର ବେଳା ।

ତୋ' କେତକୀ ବୁଦାର ଫାଙ୍କରେ ଝରି ପଡୁଥିବା
ସକାଳର କଅଁଳିଆ ସୁନେଲି ଖରାରେ
ଲେସର୍ ରଶ୍ମି ଯେ ଝରି ନ ଆସିବ,
ତୋ' 'ବହଡ଼ହ'ରେ ଲଟିଖିଆ କଳାହାଣ୍ଡିଆ ମେଘର ମୂର୍ଚ୍ଛନାରେ
ତେଜସ୍କ୍ରିୟ ଅଣୁର ଝଂକୁର କଂପନ ଯେ ସୃଷ୍ଟି ନ କରିବ,
ତୋ' ଛନଛନିଆ ଗୁହ୍ମାସ୍ନିଗ୍ଧ ପାନ ବରଜରେ
କ୍ଷେପଣାସ୍ତ୍ର ନିର୍ଘୋଷ ଯେ ମନ୍ଦ୍ରିତ ନହେବ,
ଆଉ ତୋ' ପଲ୍ଲୀ ବଧୂର ଇଷତ୍ ମଳିନ ଆଖି ପତାରେ
ବୈଧବ୍ୟର ଧୂମ୍ରାଭ କୁହେଳି ଯେ ଘୋଟି ନ ଆସିବ,
ଦେଇକି ପାରିବୁ ତା'ର ସୁନିଶ୍ଚିତ ପ୍ରତିଶ୍ରୁତି
ଆସ୍ଥାଭରା ନିବାଡ଼ ଆଶ୍ୱାସ ??
ମାଳି ଘର ଖଟୁଲିରେ ଶୋଇଥିବା ପରା,
ଅଥବା ତୋ' ନିଛପଠା ଗହଳ ମାଣ୍ଡିଆ କିଆରିରେ
ଶୋଇଥିବା ବାୟା ଚଢ଼େଇକି
ଖୋଜିବୁକି ହିରୋସିମା ଆକାଶରେ
ଶତଦ୍ରୁ ବା ମେକଂ ପଠାରେ ???
ତୋ ରକ୍ତାଭ ପଶ୍ଚିମ ଆକାଶରେ
ଅବିବେକିତାର ନିଆଁ ଝୁଲ,
ମାଲିକାନା ସ୍ୱାର୍ଥପରର ପାଗଳାମି ଉଜୁଡ଼ା ଖେତରେ ।

ତୋ ପଶ୍ଚିମ ଆକାଶର ସେଇ ଅସ୍ତଗାମୀ ପାଗଳା ସୂର୍ଯ୍ୟକୁ
ହାତୁଡ଼ା ପ୍ରହାର ଦେଇ ତୁ ଥରେ ସାବଧାନ କରିଦେ
ତୋ ରାଜ୍ୟରେ, ତୋ ନିଦ୍ରାରେ, ତୋ ସ୍ୱପ୍ନରେ,
ଅବା ତୋର 'କଳାପଟା ଅପରେସନ୍'ରେ
ଆଉ ସିଏ ବ୍ୟାଘାତ ନଆଣୁ ।

ଏଇ ମୋର ମାତୃଭୂମି,
ଭାରତ ଭୂମି ।
ସ୍ନିଗ୍ଧ, ଶୀତଳ ମହୋଦଧିର ଗୀତ ମାଳାରେ,
ହିମାଦ୍ରୀ-କାମ ଧେନୁର ଚିରସ୍ରାବୀ କ୍ଷୀର ଧାରାରେ
ପ୍ଲାବିତ, ପାଳିତ ଭୂମି,
ଏଇ ମୋର ଜନ୍ମଭୂମି—ଭାରତ ଭୂମି ।
ଆଜ ତୋର ଆଦିଗନ୍ତ ସବୁଜ ପଣତ
ଜଳିଯାଏ ହିଂସାର ବହ୍ନିରେ,
ଜଳିଯାଏ କମନୀୟ ରୂପ ତୋର
ବୈଶାଖୀ ଝାଞ୍ଜିରେ ।
ସ୍ୱଚ୍ଛ ଦିବାଲୋକ, ଅଥବା ରାତ୍ରିର ଘନ ଅନ୍ଧକାରରେ
ରାଜରାସ୍ତାରୁ ଭାସିଆସେ ବୁଟ ଆଉ ବୁଲେଟ୍‌ର ଶବ୍ଦ,
ମନ୍ଦିର, ମସଜିଦ୍, ଗୀର୍ଜା ଅବା ଗୁରୁଦ୍ୱାରରେ
ଝାଉଁଳା କୃଷ୍ଣଚୂଡ଼ାର ଶୁଷ୍କ ଆବେଗ ।
ତୋ' କେଶଗୁଚ୍ଛରେ ରକ୍ତର ଛିଟା,
ତୋ' ଆଖିରେ ଜଳ ଜଳ ଲୁହର ସ୍ଫୁଲିଙ୍ଗ
ବୈଶାଖର ଶୁଷ୍କ ତୃଣ ଜଳିଯାଏ
ଧୂମ୍ରାଭ ଅଗ୍ନି ପଟଳ ଖେଳିଯାଏ
ଛୁଇଁ ଛୁଇଁ ଖାଣ୍ଡବର ସୀମା ସରହଦ ।
ଧୂସର ଆକାଶ ତଳେ ତଥାପିରୁ
ବାତ୍ସଲ୍ୟର ମୂର୍ତ୍ତିମୟୀ ଏକକ ପ୍ରତୀକ,
ଅଭଙ୍ଗା ହାତର ଟୁକୁରା ସମ ଏକଭୂତ ମା ମୋର
ମୋ ସ୍ୱଦେଶ
ଜନ୍ମଦାତ୍ରୀ ମାତୃଭୂମି ମୋର ।



# ମୁଁ ଆଉ କବିତା ଲେଖୁନାହିଁ

✿ ଶୈଳେଶ ଚନ୍ଦ୍ର ପଟ୍ଟନାୟକ

ଆଜକାଲ ମୁଁ ଆଉ କବିତା ଲେଖୁନାହିଁ ।
ଆଜକାଲ ମୋର କବିତାଗୁଡ଼ିକ
କଲମ ମୁନରୁ ବାହାରୁ ବାହାରୁ
ବାରୁଦ ପାଲଟି ଯାଉଛି ।
ସେଇ ବାରୁଦ
କେତେବେଳେ ଖଣି ଶ୍ରମିକ ହାତରେ
ତ, କେତେବେଳେ
ନେଲସନ ମେଣ୍ଡେଲର ହାତକୁ ଚାଲିଯାଉଛି ।
ମୁଁ ଆଉ କବିତା ଲେଖୁନାହିଁ ।
ଖାଲି ବାରୁଦ ଗୁଡ଼ୁଛି ।
ଏବଂ ବାରୁଦ ଗୁଡ଼ୁ ଗୁଡ଼ୁ
ଧୀରେ ଧୀରେ ମୁଁ ବାରୁଦ ପାଲଟି ଯାଉଛି । ହୁଏତ
ଏହି ବାରୁଦ ଦିନେ କାମରେ ଆସିବ
ସେମାନଙ୍କର—ବିଶ୍ୱର
ଯେଉଁଠି ଯେତେ ଗାନ୍ଧୀ, ସୁଭାଷ
କିଙ୍ଗ, ମେଣ୍ଡାଲ ଅଛନ୍ତି ।
ଆଜି କାଲି ମୁଁ ଆଉ
କବିତା ଲେଖୁନାହିଁ ।
କବିତା ଲେଖୁ ଲେଖୁ ନିଜେ
ବାରୁଦ ପାଲଟି ଯାଉଛି
ବିଶ୍ୱର ବିପ୍ଳବୀମାନଙ୍କର ହାତମୁଠା ପାଇଁ ।



# ଟିକିଏ ଅବଧାନ ହୁଅନ୍ତୁ, ଅବଧାନେ

ମଙ୍ଗଳୁ ଚରଣ ବଣ୍ଡ଼ାଲ
ସ୍ଥାନ/ଡ଼ାକ : ପରମାଣପୁର
ଭାୟା : ଶାସନ
ଜି : ସମ୍ବଲପୁର

ଦୁନଆଁରେ ସଭ୍ୟଏଁ ଶହେରେ ଶହେ
ତୁଳସୀ ନୁହନ୍ତି କି ବନ୍ଧୁଆଣ୍ଠି ବି ନୁହନ୍ତି
ଗୋଟାପଣେ ଦେବତା ନୁହନ୍ତି କି ଦାନବ ବି ନୁହନ୍ତି
ଆପଣ ଯଦି ପାରନ୍ତି, ମୋ' ଛୁଆକୁ ଏସ୍ବାହି କୁହନ୍ତୁ, ଅବଧାନେ !
ତାଜା ଲହୁରେ ହୋରି ଖେଳୁଥିବା ମାଖନ ସିଂ ଭିତରେ
ଆଠଣି ପର ଚୁପ୍‌ଚୁପ ଧରମାଟିଏ ଅଛି
କିଏ କହିପାରେ ? ଥ'ମାର ଠିଆ ହୋଇଥିବା ସୁବାଷ ବୋଷ ବି ଥିବ !
ଆତ୍ମକାମୀ ନେତା ଭିତରେ, କିଏ କହିବ, ମଂଜ ନାହିଁ ବୋଲି
ଗାନ୍ଧୀ ବୁଢ଼ାଟା ସେଇଠି କୁଆଡ଼େ ନବୋଧ ପକ୍ଷୀଟିଏ ପରି
ଫୁର ଫୁର ହଉଥିଲା ନା' କଣ
ଏକ ଅଖଣ୍ଡ ଅଥଚ ପ୍ରସାରିତ ସବୁଜିମାର ଅନ୍ୱେଷଣରେ !
କଣ ତମର ହେଇ ଅଛି ଯେ ତମେ କହନ୍ତି !
ସବୁଜ ଉପରୁ ଆସୁଛି ଝେପ୍‌ର ପାଣି ଭଳି
ତରଳ ତରଳ !!
ଭଗାଶ୍ରର 'ଛୁ' ଭିତରେ ନଥିବ ବା କାହିଁକି ବନ୍ଧୁର ସଦାଳାପ
ମୋ' ପିଲାକୁ ଏସ୍ବା ଶିଖାନ୍ତୁ ଅବଧାନେ, ଏ ଈପ୍‌ସିତ ଫଳାପ ।
ଜନ୍ତିବା ଭଳି ହାରିବା ବି ସୁଆହଆ, ମିଠା
ସତେ ଅବା ବାସି ପୋଡ଼ପିଠା
ପର ଶିର କାତର ହୋଇ ହଗହଜା ଫାର୍ଘଶ୍ୱାସରେ
ହିତୁଙ୍କ ପର ଜଳିବା ଠାରୁ ଭଲ ସେ ମୂ ରୁକ ମୂ ରୁକ ହସ
ଆରୋହୀ ଉଲ୍ଲାସ !
ଫାଳେ ତାଜା ଜହ୍ନଭଳି ଶିଖାନ୍ତୁ ହସିବାର ଛଟା
କିନ୍ତୁ ଏ କଣ ସବୁଜ ଓଲଟା !
କହି ଭିତରେ ତସ୍ତତର ଗ୍ରୁଇ
ସମସ୍ତର ମେଲା ଆଖି ସତେ ଅବା ଅଛି ମୁହାଁମୁହିଁ ।

ଭଲପାଉ ବା ନପାଉ ସବୁ ଗିଳି ପକାଏ ମୋ' ପିଲା
ଗୋଠପାକ ମାଣ୍ଡ ଉଠୁଥିବା ଘର ଯାଏ ମାଣ୍ଡ
ଫାଜିଲ ନିହାତି !
ନିରୋଳାରେ ଦଣ୍ଡେ ଚିନ୍ତିବାକୁ ସୁଯୋଗ ଦିଅନ୍ତୁ, ଅବଧାନେ
ଯୋଥିଏ କଥା ତା' ମନ ଭିତରେ ଚଉଡି ଗୃଉଡି
କ୍ଷୀର ଢୋକ ଧାନ ପରି ଯାଚୁ
ଶିହରିତ ଉଛାଟନେ ବେଦମ୍ ବେଦମ୍ ସେ ନାଚୁ ।
ବିଶାଳ ଆକାଶର ବିପୁଳ ନୀଳିମାରେ
ଘନ ବନାନୀର ଆଦିଗନ୍ତ ସବୁଜିମାରେ
ଅମ୍ଲାନ ଧବଳ ମାଇଲ ମାଇଲ ଯାଏତ ସଂଚରି
ଯଉଠି ମରମଟା ଅଟକିଯାଏ ଖରଟିଏ ନଈପରି
କୁନି ଝିଅଟିଏ ସତେ ବନ ଝରଣାର ଅସ୍ଥିରତାରେ ଛମ୍ ଛମ୍
ଜହ୍ନଁ ମାଁମୁକୁ ହାତଠାରି ଡାକିବାର ବିଚିତ୍ର ମୁଦ୍ରାରେ
ଜୀବନର ମାନେ ଖୋଜେ, ସେତକ ଶିଖାଅ, ଅବଧାନେ ମୋ ଛୁଆକୁ
ଠକିବାଠାରୁ ଠିକଣା ବେଶୀ ପ୍ରତିପ୍ରଦ ଓ ଅର୍ହ
ଆପଣା ବୁଦ୍ଧିରେ ଠାକୁର ହବାକୁ ବତାଅ ଅବଧାନେ
ବହୁ ସନ୍ତାନକୁ ଭୂମିଷ୍ଠ କରିଥିବା ଆପଣଙ୍କ ଭଳି
ମୋ' ପିଲା ସଭିଙ୍କ କଥା ଶୁଣୁ
ହେଲେ ସବୁ ଶୁଣି ବିବେକର ଚାଲୁଣୀରେ
କେବଳ ସତ୍ୟକୁ ହିଁ ଛାଣୁ ।
ଦୁଃଖ ଯେବେ ଟିଆ ହବ ଗଛପରି
ତାକୁ ବିରାଜମାନ ହେବାକୁ ଶିଖାଅ ଅବଧାନେ
ଫୁଲ ହୋଇ ଶାଖାରେ ଶାଖାରେ ।
ନିଜ ଆଡ଼କୁ ଟାଣି ଆଣିବାରେ ବିଶ୍ୱାସ ଥାଉ ତା'ର
ମଣିଷକୁ ଭଲ ପାଇ ଶିଖୁ
ସିଏ ଯାହା କହୁ ଯାହା ଠିକ୍ ତହିଁରୁ ନୁହେଁ ଟଳିବାର
ସାର୍, ତାକୁ କହନ୍ତୁ ବାରଂବାର
ପ୍ରଥମେ ନିଜକୁ ସେ ନିଜେ ଭଲ ପାଇ ଶିଖୁ । ନିଜ ଗ୍ରହ ପରି
ଧ୍ୱନ୍ଦସ ଶବସ !!

●

# "ଅନାମିକା"

ଅବୁ ଜଫଲ୍ ଫଜଲ୍ ହକ୍

ବିପର୍ଯ୍ୟସ୍ତ ନନ୍ଦନକାନନ, ତୁମେ କୁହନା ମୁଁ ବି କହିବିନି
ପଥଅଛି କାହିଁ ତୁମେ ଜାଣନା, ମୁଁ ବି ଜାଣିନି
କାହିଁ ଦଙ୍ଗା କାହିଁ ଭୂମିକମ୍ପ ଆଜି ଯୁଦ୍ଧର ତରଙ୍ଗ
କୁହୁଳେଇ କାନ୍ଦୁଛି ଆକାଶ, ତୁମେ ଜାଣନା ମୁଁ ବି ଜାଣିନି
ରକ୍ଷକ ଭକ୍ଷକ ସାଜିଛି ଏଇ ଧୂସର ମାଟିରେ
ରକ୍ତାକ୍ତ ଦେହମନ, ତୁମେ କୁହନା, ମୁଁ କହିବିନି
ଯେଉଁଠି ସବୁ ଫକିର ଗାଇଥିଲେ ଶାନ୍ତିମୈତ୍ରୀର ଗାନ
କାହିଁଗଲା ମିଳନର ସେ ପୀଠ, ତୁମେ କୁହନା, ମୁଁ କହିବିନି
ସହର ମୁଖିଆ ଦୋଷ ଲଦିଦେବ,
ପଡ଼ିଛି ଶବମାନ, ତୁମେ କୁହନା, ମୁଁ କହିବିନି
ବେଶ ପୋଷାକ ଲହୁଲୁହର ଏ କାଟ ରଙ୍ଗ ଆମ
ଜନ୍ମିତ ଜନ୍ମ, ମାଟି ହସ୍ତ, ତୁମେ କୁହନା ମୁଁ କହିବିନି
ଧନ ଜନ ମାନ ମହତ ସବୁ ତ ଲୁଟହେଲା ଘରେ ଉଦ୍ଧ
ବାୟୁମଣ୍ଡଳ ଶ୍ୱାସରୁଦ୍ଧ କାହିଁ, ତୁମେ କୁହନା ମୁଁ ବି କହିବିନି
ତଥାପି ଆମକୁ
ଗୋଳିବାକୁ ହେବ ନାନା ରଙ୍ଗ
ଜାତି, ଧର୍ମ, ଭାଷା ଓ ପ୍ରାନ୍ତଭର
କରିବାକୁ ସର୍ଜନା—ଗୋଟିଏ ରଙ୍ଗର
ଏଣୁ ଆସ ସଭିଏଁ ଆଜି
ଯେତେ ସବୁ ଜାତି ଧର୍ମ, ଭାଷା ମାତର ରଙ୍ଗକୁ
ଗୋଟିଏ ପାତ୍ରରେ ପକାଇ
ଜାତୀୟ ସଂହତିର ଆଦର୍ଶ ତୂଳୀରେ
ଆଙ୍କିଦେବା ସଭିଙ୍କ ମନ କାନଭାସରେ
ଗୋଟିଏ ଜାତି, ଗୋଟିଏ ଭାଷା ଓ ଗୋଟିଏ ଧର୍ମର
ରୂପଟିଏ, ସେ ହେବ ମାନବିକତାର
ମୂର୍ତ୍ତି............... !!



# ସ୍ୱପ୍ନ, ସଂସ୍କୃତି, ସଂଗ୍ରାମ

● ଗୌରାଙ୍ଗ ଚରଣ ରାଉତ

ଯିବା-ଆସିବା ରାସ୍ତା ମଝିରେ, ପାଚେରୀଟାଏ ଠିଆ କରାଇଲେ,
କେଉଁ ଯୁଗର ପୁରୁଣା ପୋଖରୀ ପଙ୍କ ଢାଳିଦେଲେ,
କମ୍ପା କୋଦାଳରେ ହାଣିମାରି ଖାଲ କରିଦେଲେ
କେମିତି ବା ଯା-ଆସ କରିହେବ
ଆଗ ଗୋଡ଼ ଉଠାଇ ସାରିବା ପରେ,
ପଛ ଗୋଡ଼ କେହି ଯଦି ପଛଆଡ଼ୁ ଜୋର୍ ଟାଣିଧରେ ?
ପେଟ ପାଇଁ ଓଠ ପାଇଁ ଅହରହ ସଂଗ୍ରାମ ଭିତରେ
ଆଖି, ନାକ, ହାତ, ଗୋଡ଼ ଯେତେ ସବୁ
ବିରକ୍ତିର ମୁଦ୍ରା ଆଙ୍କି ଧର୍ମଘଟ କଲେ
ହାଣ୍ଡି ପରି ମୁଣ୍ଡକର ଲାଭ କ'ଣ
ଲାଭ କ'ଣ ଏ ଦେହରେ ନିଃଶ୍ୱାସରେ ଜୀବନ କାଟିବା
ପ୍ରଶ୍ୱାସ ଆହୁରି ଭଲ, ଆନ୍ଦୋଳନ 'ସୃଷ୍ଟି' ବିପକ୍ଷରେ ।
ଭଜନ କୀର୍ତ୍ତନରେ ଅନ୍ତ ନାହିଁ
ଅନ୍ତ ନାହିଁ ସୁନ୍ଦର କମ୍ପା ବନ୍ଦନା ମାଳାର,
ସଜ ମାଛ ପୋକ ଲଗା ହୁଏ କାଲି
ରାତି ପାହି ସୂର୍ଯ୍ୟୋଦୟ ପରେ
ସତ୍ୟ ଝୁଲେ ପଙ୍ଖା କମ୍ପା କେଉଁ ଏକ ଗଛର ଶାଖାରେ
କାଠ ଏବଂ ପାଷାଣର ଦେହ ପୂର୍ବପରି ରହିଥାଏ
ରକ୍ତହୀନ, ପ୍ରାଣହୀନ, ନୀରବ, ନିସ୍ତବ୍ଧ ।
ଏବେ କାଲି ଗୃହପାଖ ନିଆଁ ଘେର ଲିଭିଯାଉ
ଭାଙ୍ଗିଯାଉ ରାସ୍ତା ମଝି ବିରାଟ ପାଚେରୀ
ପଙ୍କ ଶୁଖୁ, କୋଦାଳର ମୁନ ବାଙ୍କିଯାଉ
ପେଟ, ଓଠ ଗାଇଯାନ୍ତୁ ସହଜରେ
ଦରକାରୀ କାର୍ଯ୍ୟାବଳୀ ରହିତ ମୂଲ୍ୟରେ
ଫେରିଆସୁ ସାଗରପୁତ୍ର ଉପେକ୍ଷିତା ରୂପଶ୍ରୀ ପାଖକୁ ।
ଯିବା-ଆସିବାର ରାସ୍ତା ଫାଙ୍କ ରହୁ
ବନ୍ଦ ହେଉ ଧର୍ମଘଟ............
କପୋତଟି ସ୍ୱରଆଡ଼େ ଉଡ଼ିବୁଲୁ,
କେଉଣା ମେଲି,ଗୀତ ଗାଇ, ଅନ୍ନାଭ ଯୋଗାଡ଼କରି
ସକାଳରୁ ସଞ୍ଜଯାଏ, ଛୁଆପାଇଁ, ତା' ନିଜ ପାଇଁ ।

●

# ହେ, ବିଜୟୀ !

● ଶ୍ରୀମତୀ ବିମଳା ସିଂହ (ଗୀତା)
ଏମ୍. ଏ., ବି. ଇଡ଼.
ସହ ଶିକ୍ଷୟିତ୍ରୀ
କୋଦଳା ଉଚ୍ଚ ବାଳିକା ବିଦ୍ୟାଳୟ,
ଗଞ୍ଜାମ

ଆନ୍ଦୋଳନ ! ଇତିହାସ !! ତୁହିଁ ଏ ଜାତିର ଅବା—
ଏ ଦେଶର.........
ମୂକସାକ୍ଷୀ କିନ୍ତୁ ଆଜ ଶିକ୍ଷକ ଜାତିର
କେତେ ଲୁହ କେତେ ଲହୁ ଦେଇ
ଗୁହିଁଥିଲି କରିବାକୁ—
ତିକି ବକ୍ଷେ କେତୋଟି ବିସ୍ମୟ ପୃଷ୍ଠା ॥

ପାହାଚ ପାହାଚ ଦେଇ—
ପ୍ରତି ପଦକ୍ଷେପ.........
ବିଜୟର ସୂର୍ଯ୍ୟ ଆଜ ଉଦୟଗାମୀ
ବିଚ୍ଛୁରିତ କରି ସେହି ମହାମନ୍ତ୍ର—
"ଏକତା ହିଁ ବଳ ।"

ତେଣୁ...........ଶୁଣି ଯାଅ
କଳାପାହାଡ଼ର ବଂଶଧର ଗଣ
ମତିହୀନ, ପଥଭ୍ରଷ୍ଟ
ଅନ୍ଧାରିଆ କୋଠରୀ ଭିତରେ—
ଭବମୂର୍ତ୍ତି ତବ କ୍ଷୁଣ୍ଣ ଆଜ......

ବଜପୁର ପୁଷ୍ପମାଳ୍ୟ ପିନ୍ଧି—
ହସର ଅରୁଣିମା ଖେଳଯାଏ—
ଶତଶତ ଶିକ୍ଷକ ଶିକ୍ଷିକା ବୁକେ······
ଯେତେ ଦାବୀ ଶପଥର ରୂପାୟନେ,
ଯାହାଥିଲା ଦିନେ ଏକ ପ୍ରଶ୍ନବାଚୀ,
ସେତ ଆଜ ଦ୍ୱାରଦେଶେ ଉପସ୍ଥିତ
ଶାନ୍ତିକାମୀ ଶିକ୍ଷକର ଦ୍ୱାରଦେଶେ
ବଇଁଚର କଠୋରତା ଭାଙ୍ଗି ॥

ତେଣୁ···········
ବାକି ଅଛି ଆଉ କିଛି ନିଷ୍ଠା,
ସମାପ୍ତତା ଆଣିବାକୁ ସେ ଇତିହାସର
ଛିନ୍‌ଭିନ୍ କରିଦେଇ କଳାପାହାଡ଼ର
ଗୃହପକ୍ଷେ ଥିବା ଲୁହାବାଡ଼ ସବୁ ॥

ସବୁ ଚୁପ୍‌ଚୁପ ପରେ············
ତୋଳିଦିଅ ବଜପୁର ସୌଧ
ବଞ୍ଚିରହୁ, ସବୁ ଗ୍ଲାନି ଧୋଇ ନେଇ
ଏ ଶିକ୍ଷକ ସଙ୍ଘ
ବର୍ଷ ବର୍ଷ ଧରି···········
ଶାନ୍ତିର କପୋତ୍ ଯାଉ —
ହୃଦୟର ମଧ୍ୟ ବନ୍ଧୁ,
ଗଢ଼ିବାକୁ ନୂତନ ପୃଥିବୀ
ସେହି ବୃକ୍ଷ—
'ଜାତୀୟ ସଂହତି'ର
ଏକ ଶାଖା ହୋଇ ॥



# ଜଣେ ନାମକରା ନେତାଙ୍କ ଭାଷଣର କିୟଦଂଶ—

**ପୂର୍ଣ୍ଣଚନ୍ଦ୍ର ଦାଶ,** ସମ୍ପାଦକ
ପୁରୀଜିଲ୍ଲା ମାଧ୍ୟମିକ ଶିକ୍ଷକ ସଂଘ

ହେ ଶିକ୍ଷକ
ଦଧୀଚିର ଉତ୍ତର ପୁରୁଷ
ସମାଜକୁ ଅସ୍ଥି ଦାନକର
ଜଳି ଜଳି ଯାଅ, ନିଜ ଧର୍ମ ରକ୍ଷାକର ।
ତୁମେ କ ଶୁଣନା
ଏଠିସବୁ ବିକାଶ ଦାନବ
ରଡ଼ି କରି ଘୋଡ଼ା ଛୁଟାଉଛି
ହୋଟେଲ, ସିନେମା ଶିଳ୍ପ, ପାନଶାଳା ଅବା ଯୋଜନା ମନ୍ଦିରରେ
ସବୁଠି ତା ଘୋଡ଼ାଟାପୁ ଧ୍ୱନି ।
ଏଇ ଦେଖ ବିଜୁଳି ଲିଭୁଛି
ଲିଭିବାଟା ତା ଧର୍ମ
ଯେମିତି ସେମାନେ ଶୁଭ ପକାନ୍ତି, ଅଥଚ କାମ ଦେଖାନାହିଁ
ଫାଇଲରେ ଯୋଜନା ଫଳାନ୍ତି
ଜଙ୍ଗଲ ପାଇଁ ଜଙ୍ଗଲ କାଟନ୍ତି
ଡାକ୍ତରଖାନାରେ ସର୍ବବ୍ୟାଧିହର ନାଲିପାଣି ରଖାନ୍ତି ।

ସେମାନେ କହନ୍ତି, ଆମେ ସବୁ ନିଷ୍କଳଙ୍କ
(କିନ୍ତୁ ଚନ୍ଦ୍ରରେ କଳଙ୍କ ଅଛି)
ରାଜନୀତି ପେଣ୍ଡୁ ଧରି ଗୋଲ ମାରୁ
ଜିତିଗଲେ ମନ୍ତ୍ରୀ ହୋଇ କ୍ଷମତାର ଦାନ୍ତ ପରଖୁ
ମୂକ ଜନତାକୁ ସଂଯତ କରୁ
ଅଥବା ହାରିଗଲେ କକ୍ଷଚ୍ୟୁତ ଗ୍ରହ
ଅନ୍ୟ ନାମ ଅସନ୍ତୁଷ୍ଟ
ତାପରେ କୁରୁକ୍ଷେତ୍ର-ସନ୍ତୁଷ୍ଟ ବନାମ ଅସନ୍ତୁଷ୍ଟ
ନିର୍ମଳ ବନାମ ଅନିର୍ମଳ ଇତ୍ୟାଦି ଇତ୍ୟାଦି........ ।

ତେଣୁ ହେ ଶିକ୍ଷକ
ତୁମେତ ନକଲ ବନ୍ଧନ, ମୋରଧ ତେଲ କାରବାର କରିପାରିବନି
ହିସେଇନ୍ ତୁମ ହିସାବ ବାହାରେ
ଅନ୍ତତଃ ନିଜେ ଜଳ, ଦହନରେ ସୁଖଅଛି
ସାର-ଦେଶର ବୁଦ୍ଧିଜୀବୀମାନେ ଯେମିତି
ପ୍ରଜ୍ଞାବନ୍ଧା ଦେଇ ଜଳୁଛନ୍ତି ।

## "ଆହ୍ୱାନ ବିଶ୍ୱ ଶାନ୍ତିର"

**ଶ୍ରୀ ତୁଷାରକାନ୍ତ ବେହେରା**
ପ୍ରଧାନ ଶିକ୍ଷକ, ପଣ୍ଡାଳମ ଉଚ୍ଚ ବିଦ୍ୟାଳୟ

ଆମେ ଜଗତର ଯେତେକ ତରୁଣୀ ଭାଇ
ସଭିଏ ସମାନ ସାନବଡ଼ କେହିନାହିଁ ।

ପ୍ରତିଦ୍ୱନ୍ଦୀତାରୁ ମିଳିବ କସ,
ସହଯୋଗୀ ହୋଇ ଚଳିବା ଆସ ।
ପୋଛିଦେଇ ସବୁ ବଡ଼ିମା ଗ୍ଳାନି,
ଗଢ଼ି ଦେଇଯିବା ଶାନ୍ତି ସରଣୀ,
ଆମପାଇଁ ପୁଣି,
ଆମର ଦାୟାଦ ପାଇଁ,
ଆମ ପରଶରେ ସ୍ୱର୍ଗହେଉ ଏ ଧୂଳି ଧୂସରିତ ଭୂଇଁ ।

ଆମେ ଦେବା ନାହିଁ ଅର୍ଘ୍ୟତାରେ,
ଗୁଡ ଅଟେ ଯେ ଅସ୍ତଧାରେ,
ପରହିତରେ ଯେ ଜୀବନ ଜାଳେ,
ଆମର ପ୍ରଣତି ତାପଦ ତଳେ,
ସେ ଏକା ମରଣ ଜୟୀ,
ଶିକ୍ଷା ନିଅ ପାଖ ନିଅ ତାହାର ନିକଟୁ ଯାଇ ।

ହିନ୍ଦୁ, ମୁସଲମ୍, ଖ୍ରୀଷ୍ଟୀୟାନ,
ବୌଦ୍ଧ, ଜୈନ, ପର୍ସିୟାନ,
ମତବାଦ ସବୁ ନୁହଇ ଧର୍ମ,
ସବୁ ଧର୍ମ ପରେ ମାନବ ଧର୍ମ,
ମନେହେଉ ଦେଖ ଯାଇ,
ଶାନ୍ତି, ମୈତ୍ରୀ, ପ୍ରେମଠାରୁ ବଳି ବଡ଼ଧର୍ମ କିଛି ନାହିଁ ।

ଜଣକ ମନରେ ଲାଗିଲେ ନିଆଁ,
ପଣକ ଆଖିରେ ବାଜିବ ଧୂଆଁ,
ଏଇ ଶିକ୍ଷା ନେଇ ଗଢ଼ ଜୀବନ
ନରହୁ ଅଭାବ ଦୁଃଖ କଷଣ,
ମମତା ବନ୍ଧନେ ରହି,
ମହା ଆନନ୍ଦରେ ଦିନ ବିତାଇବ ହସି ଅପରେ ହସାଇ ।

ମନ ସଙ୍ଗେ ଯେବେ ମିଶିବ ମନ,
ନ ରହିବ ଆଉ ଦୁଃଖ କଷଣ,
ଏକଇ ନୟନୁ ବହିଲେ ଲୁହ,
ସବୁର ଛାତିରୁ ଉଠିବ କୋହ,
ସେସନେହ ଶରଧା ଥାଇ,
ରାଗ, ହିଂସା, ଦ୍ୱେଷ କପଟତା ଯେତେ ରହିବ ଆବା ସେ କାହିଁ ।

ଆମେ ଏ ବିଶ୍ୱର ଅମୃତ ସନ୍ତାନ,
ଉନ୍ନତ କରି ଗଢ଼ିବା ଜୀବନ,
ଧର୍ମ ଗରବର ଭେଦଭାବ ଭୁଲି,
ପ୍ରଗତି ପଥରେ ଆସ ଯିବା ଚାଲି,
ଶାନ୍ତିର ବାର୍ତ୍ତା ବହି,
ବିଶ୍ୱରେ ଶାନ୍ତି ପ୍ରତିଷ୍ଠା କରିବା ଆମେ ତ ଆମରି ପାଇଁ ।

# ବିଶ୍ୱବାଣୀ

ବିବେକାନନ୍ଦ ଦାଶ
ଓଷ୍ଟ୍ରା ସମ୍ପାଦକ

ରଚନାକାଳ—୨୫ । ୧୨ । ୮୬

ଆଶା ଆଉ ଆଶ୍ୱାସନା ମଶାଲକା ମରୁଦ୍ୱୀପ ମଧ୍ୟେ
ଆମେ-ସବୁ ଭ୍ରଷ୍ଟାନ୍ୱେଷୀ ଦଳ ଖୋଜୁ ଯେବେ
ଆମେ କାଳିଦାସ ଆଫ୍ରିକାର ଶ୍ୱେତାଙ୍ଗମାନଙ୍କୁ
ସେମାନେ କିନ୍ତୁ କ୍ରୀତଦାସ ବିଶ୍ୱ ବେପାରୀର
ଯେଉଁମାନେ ଆଦର୍ଶକୁ ବିକା କଣାଦେଲେ
ଛୁରୀ ଭୁଷି ପରର ପିଠିରେ ବନ୍ଧୁସାଜି ନିଅନ୍ତି ସାବାସ
ଆମେ କିନ୍ତୁ ଚାହେଁ ନାହିଁ ଲୁଲୁମ୍ବା ଯାମେ ଆଉ ମାର୍ଟିନ ଲୁଥର
ଯେଉଁମାନେ ନିଜପ୍ରାଣେ ଦେଇ ଯାପଦାନ
ସୃଷ୍ଟିକଲେ ଅନେକ ପ୍ରଗତି ଆଉ ଆଲୋକ ବର୍ତ୍ତିକା
ତୋଳିଦେଲେ ନବଦିଗ୍‌ବିବସ୍ତୁ ଭଏତନାମ କାମ୍ପୁଚିଆ ନିକାରଗୁଆରେ
ସେମାନଙ୍କ ଶୋଣିତ କଣିକା ସୃଷ୍ଟିକଲା ଦେଶେ ଦେଶେ ନବଦିକର୍ତ୍ତନ
ଝଲକେ ଝଲକେ ଭୁଣିଦେଲା ଆତ୍ମିକ ବିଶ୍ୱାସ କର୍ମବୀର
ଜଟିଖିଆ ତ୍ୟାଗବୀର ପ୍ରାଣେ ଶାନ୍ତି ଆଉ ସଦ୍ଗତ ବିଶ୍ୱାସ
ସେ ବିଶ୍ୱାସ ପ୍ରତି ଧ୍ୱନି ଶୁଭେ ଅସ୍ତହେଉ ଅଦମିକା ସ୍ୱାର୍ଥ
ଭ୍ରାତୃତ୍ୱର ନିଗୁଢ଼ ବନ୍ଧନେ ମନ୍ଦ୍ରଉଠୁ ପ୍ରେମଭେରୀ ଶାନ୍ତିର ସଙ୍ଗୀତ
ଯୁଦ୍ଧଭସ୍ମ ଲୟହେଉ ଧ୍ୱଂସଧ୍ୱଜୀ ସ୍ୱସାବର ଘାଞ୍ଚି
ଅଭ୍ରାନ୍ତ ଉଦିତ ସୂର୍ଯ୍ୟଶିଶୁ ଦେଉ ଅମୃତ ପ୍ରତ୍ୟୟ
ଅଶାନ୍ତ ରଣଭେରୀ ସ୍ତବ୍ଧହେଉ ଧ୍ୱଂସହେଉ ଯୁଦ୍ଧଖୋର ପରମାଣୁ ଅସ୍ତ୍ର
ନକ୍ଷତ୍ର ମାଳମା ହସିଉଠୁ ଫୁଟିଉଠୁ ଗର୍ଭସ୍ଥ ଶିଶୁର ଦଗ୍ଧେଟି ପ୍ରକାଶ
ଚନ୍ଦ୍ରୋଦୟ କୋଟି କୋଟି ପ୍ରାଣେ ହେଉ ପୁଲକିତ ସୃଷ୍ଟିର ବିକାଶ
ଜ୍ଞାନ ହେବ କୃଷିର ଜୀବିକା କୃଷି ହେଉ ସୃଷ୍ଟିର ସଂସ୍କୃତି
ଧନ୍ୟ ହେଉ ମଣିଷର ଧର୍ମ କର୍ମ ମଧ୍ୟେ ଅମୃତ ଅମ୍ଲାନ
କବି ହେଉ ବୁଦ୍ଧ ଆଉ ଯୀଶୁର ଦାସ୍ତାଦ ଗାନ୍ଧୀ ଆଉ ଲେନିନ୍‌ର ପୁତ୍ର
ଆଲୋକିତ ମଣିଷର ପ୍ରେମେ ସୃଷ୍ଟି ଆଉ ସାଗର ମନ୍ଥନେ
ବିମୋହିତ ବିଶ୍ୱମୂର୍ତ୍ତୀ ଅମୃତାସ୍ୟମାନ ଭବନ୍ତୁ ସର୍ବେ ସୁଖିନଃ



# କାହାପାଇଁ......କାହାପାଇଁ ??

● ରମେଶ ଚନ୍ଦ୍ର ସାମଲ
ବାଇଶିମୌଜା ହାଇସ୍କୁଲ
ଅରଖପୁର, କଟକ

କାହାପାଇଁ, କାହାପାଇଁ ?

ବୋମା ପରୀକ୍ଷା, କ୍ଷେପଣାସ୍ତ୍ର ଘାଟି
ମଣିଷରୁ ଖସି ଦାନବ ଗଲକି ହୋଇ ?

ପ୍ରତିଟି ମୁହୂର୍ତ୍ତେ କୋଟି କୋଟି ଟଙ୍କା ଶ୍ରାଦ୍ଧ କରୁଛ
ଦିନକୁ ଦିନ ପ୍ରତିରକ୍ଷା ଖର୍ଚ୍ଚ ବଢ଼ାଇ ଚାଲିଛ
ସବୁଠିକ କେବେ ଏତେ ଆୟୋଜନ କାହାପାଇଁ, କାହାପାଇଁ ??

କାନେକି ପଡ଼େନା ତୁମ
ଆଫ୍ରୋ-ଏସିଆର ନିରନ୍ନ ମଣିଷ ଡାକ ?

ମାରବେ ସହୁଛନ୍ତି ସିଏ
ବଢ଼ି, ମରୁଡ଼ି, ଜଳକଷ୍ଟ ଓ ଭୋକ
ତୁମର କି କିଛି ସେମାନଙ୍କ ପାଇଁ କରିବାର ନାହିଁ ! ନାହିଁ ??

ଭୁଲିକି ଗଲ ଦ୍ୱିତୀୟ ବିଶ୍ୱ-ସମର ବିସ୍ଫୋରଣ କଥା
ହିରୋସିମା ଆଉ ନାଗାସାକିର କରୁଣ, ବିଭତ୍ସ ଗାଥା
ଶିବଲିବେଲକୁ ଦେହେ ଖେଳେନା କି ଅଦ୍ଭୁତ ଶୀତ୍କାର !

ମଣିଷ ଯେପରି ଭୋଗୁଛନ୍ତି ସେଠି
ତେଜସ୍କ୍ରିୟତାର ହୋଇ ଶୀକାର !

କାହାପାଇଁ, କାହାପାଇଁ ?

ତାରକା ଯୁଦ୍ଧର ସଜ୍ଜା ଚାଲିଛି

ପରିଣାମ କଥା ମନେକର ନାହିଁ ?
ଥରେ ଲାଗିଗଲେ ଅଣୁ ସମର
ଧରିତ୍ରୀ ହୋଇବ ପୁରା ଅଂଧାର
ପ୍ରାଣୀ ଉଦ୍ଭିଦର ବୁଡ଼ିବ ସତ୍ତା
ଦେଖିବାକୁ କେହି ନଥିବେ ସେ ଉଦ୍ଭ୍ରାନ୍ତ ହତା ! !

ନିଃଶେଷ ହେବାର ଏ ଉଦ୍ଧାମତା
ନୁହେଁକି ପାଗଳାମୀ ଓ ଅବିବେକତା ?

ଇନ୍ଦ୍ର, ବରୁଣ, କୁବେର ଜୟୀ
ରାବଣ ରହିଲା ନାହିଁ

ତାର ପଥ ବାଛି ତୁମେ ଭାବୁଛ
ଶାନ୍ତିରେ ଯିବ ରହି ?

ହେବ ନାହିଁ, ହେବ ନାହିଁ
କେହି କେବେ ହେଲେ ଶାନ୍ତିରେ ରହିଛି ଦାନବ କାମନା ନେଇ ।

କୋଟି ଜନତାର ଆଜ ସେହି ନିବେଦନ
ଉଡ଼ାଇବାର ସ୍ୱପ୍ନ ଛାଡ଼ 'ସି ବାର୍ଡ଼' ଓ 'ଫାଲକନ'

ମୁକ୍ତ ପ୍ରଶାନ୍ତ ଆକାଶେ ଉଡୁ ଶାନ୍ତି-କପୋତ
କହି ବୁଲୁଥାଉ—ଶାନ୍ତିପାଇଁ ଅଛି ଗୋଟିଏ ପଥ
ସେବା, ପ୍ରେମ ଓ ତ୍ୟାଗର ବ୍ରତ ।

# କାମନା—୧୯୮୭

ବଜ୍ର ପ୍ରସାଦ ନାଥ

ସତାଅଶୀ ଆମପାଇଁ······
ବନ୍ୟା ଆଣୁ ;
ବାତ୍ୟା ଆଣୁ ,
ସ୍ନେହ ଆଉ ଶ୍ରଦ୍ଧାର ବନ୍ୟା ଆଣୁ
ପ୍ରୀତି ଆଉ ଆନନ୍ଦର ବାତ୍ୟା ଆଣୁ ॥

ଜନ୍ମ ଆଣୁ
ମୃତ୍ୟୁ ଆଣୁ
ଶାନ୍ତି ଆଉ ମୈତ୍ରୀର ଜନ୍ମ ଆଣୁ
ଦୁଃଖ ଆଉ ଯନ୍ତ୍ରଣାର ମୃତ୍ୟୁ ଆଣୁ ॥

ବେଗ ଆଣୁ
ଶୋକ ଆଣୁ
ସତ୍ୟ ଆଉ ତ୍ୟାଗର ବେଗ ଆଣୁ
ଦେଶ ପାଇଁ ଜାତି ପାଇଁ ଶୋକ ଆଣୁ

ଚିନ୍ତା ଆଣୁ
ଦୁଃଖ ଆଣୁ
ପ୍ରଗତି ଓ ଉନ୍ମେଷର ଚିନ୍ତା ଆଣୁ
ହିଂସା ଆଉ କ୍ରୋଧ ପାଇଁ ଦୁଃଖ ଆଣୁ ॥

ଖରା ଆଣୁ
ବର୍ଷା ଆଣୁ
ଜ୍ଞାନ ଭରା ଆଲୋକର ଖରା ଆଣୁ
ପ୍ରେମ ଆଉ ଉଲ୍ଲାସର ବର୍ଷା ଆଣୁ ॥

ଦିନ ଆଣୁ
ରାତି ଆଣୁ
"ବସୁଧୈବ କୁଟୁମ୍ବକଂ"—ଦିନ ଆଣୁ
ଅସତ୍ୟ ଓ ଅନ୍ୟାୟର ରାତିଆଣୁ ॥

ପୁଣି ମୃତ୍ୟୁ ଆଣୁ
ଧ୍ୱଂସ ଆଣୁ
ଯୁଦ୍ଧ ଆଉ ସଂଘର୍ଷର ମୃତ୍ୟୁ ଆଣୁ
ଆମ ପାଇଁ କଂସ ଆଉ ରାବଣର ଧ୍ୱଂସ ଆଣୁ ॥

●

# ବିଶ୍ୱଶାନ୍ତି ପାଇଁ ଶାନ୍ତି କହାଣୀ

ଶ୍ରୀ ବ୍ରଜକିଶୋର ଖଣ୍ଟୁଆ
ଗୁରୁଡ଼ିଝାଟିଆ ହାଇସ୍କୁଲ୍, କଟକ

ମାନବ ଜାତିର ଭବିଷ୍ୟତ ଛିନ୍ନ ପୃଷ୍ଠା ଖୋଲି,
ଦେଖ ଆଜ ନବୀନ ଯୁବକ, ଦଶେ ଚକ୍ଷୁହୀନ ଖାଲି ମରୁବାଲି ।
ନାହିଁ କାହିଁ ଶୋଷେ ଜଳ, ତେନାଏ ପବନ,
ଯା ଲାଗି ବଞ୍ଚିବ ବଂଶେ, ମାନବର ଶିଶୁ ;
ଖେଳାଇ ଲପନେ ତାର ନବ ଅରୁଣିମା ॥

ତା ପବନ ହୋଇଛି ବିଷାକ୍ତ, ପରମାଣୁ ତେଜସ୍କ୍ରିୟ ଲଭି,
ଜଳ ତାର ମେଣ୍ଟାଏ ନାଁ ତୃଷା, ଢାଳି ତାରକା ଯୁଦ୍ଧର ପବି ।
ପରିବେଶ ପ୍ରଦୂଷଣ ତାନ, କି ଖାଇ ବା, ବଞ୍ଚିବ ସେ ଭବେ ?
ରକ୍ତମୁଖା, ଯୁଦ୍ଧଖୋର, ମାନବ ଅରାତି,
ରଚିଯାଏ ବିଶ୍ୱ ଧ୍ୱଂସି ମାରଣାସ୍ତ୍ର, କରିଯନ୍ତ୍ର କରିବାକୁ ସମଗ୍ର ପୃଥିବୀ ॥

ହିଁନେ ଯେବେ ସେ ନିଷ୍ଠୁର,
ମଣିଷ ରକ୍ତରେ ଖେଳିବାକୁ ହୋଇ ।

ନାଗାସାକି, ହିରୋସୀମା ବୁକେ, ପ୍ରହାରିଲା ପରମାଣୁ ବୋମା ।
ଦେଖିଛକି, ବିଂଶ ଶତାବ୍ଦୀର ମଣିଷ ସନ୍ତାନ,
ଲୋମହର୍ଷି, ସଇତାନ ଲୀଳା ?
କାହିଁ ଗଲା ନିମିଷକେ ମଣିଷ ସମାଜ ?
ହାତଗଢ଼ା ସୌମ୍ୟ ଅଟ୍ଟାଳିକା, ତଡ଼ାଗ, ମଣ୍ଡପ,
ଥିଲା ଯାହା ନେତ୍ର ମୁଗ୍ଧକର ?

ସୁନ୍ଦର ପୃଥିବୀ ଅଛି, ଛନ୍ତି ଚନ୍ଦ୍ର, ସୂର୍ଯ୍ୟ ଗ୍ରହ ଓ ନକ୍ଷତ୍ର
ଦେଖିଛନ୍ତି ମୃତ୍ୟୁଲୀଳା ହାହାକାର, ହୃତ ବିଦାରକ ଛବି ।
ମାତା କୋଳେ କବାକ ନିସ୍ପନ୍ଦ ଶିଶୁ,
ସ୍ୱାମୀ କୋଳେ ଲଳନା ରତନ,
ମହାନିଦ୍ରା ଭଜି ଯେବେ ଶୋଇଲେ ଧରଣୀ ପରେ,
ଦେଖିଛକି, ଜନ ନେତାଗଣ ?

ଡାକେ ଆଜ ହିରୋସୀମା ଶିଶୁ, ଶାନ୍ତି ଦିଅ ବିଶ୍ୱ ପ୍ରାଣେ,
ନିଷ୍ଠୁର ଶାସକ,
ହସ ଦିଅ, ଭାଷା ଦିଅ ମଣିଷ ମୁଖରେ,
ଫିଙ୍ଗି ଦୂରେ ପରମାଣୁ ଅସ୍ତ୍ରର ଝଲକ ।
ଆଲୋକ, ଅନିଳ, ଜଳ, ଖାଦ୍ୟ, ବସ୍ତ୍ର, ମାଗୁଛନ୍ତି ଧରଣୀ ଶାବକ,
ମିଶାଇଲ, ପରମାଣୁ ବୋମା, ହୋଇବକି ତା, ପରିପୂରକ ?

ଶାନ୍ତ ଏଇ ସୁନ୍ଦର ପୃଥିବୀ, ଜଳ ତାର କେଡ଼େ ସୁମଧୁର,
ପବନ ତା କି ଶୀତଳ, ଆଲୋକ ତା କେଡ଼େ ମନୋହର,
ହସି ଖେଳ ଧରଣୀ ବକ୍ଷରେ, ରଚିବାକୁ ଅନ୍ତନୟ ତାର,
ହିଂସାନଳ କ୍ରୋଧ ଓ ବୈରତା ତେଜି ମନୁ ଯୁଦ୍ଧଖୋର ଭାବ ।
କୋଳକରି ନିଅ ସର୍ବେ ମଣିଷ ସମାଜେ, ମର୍ତ୍ତ୍ୟ ହେଉ ସ୍ୱର୍ଗ ॥

ନଆସୁ ଜୀବନେ କେବେ, ଆଉ ହିରୋସୀମା,
ନାଗାସାକି ବୁକୁପରେ ପରମାଣୁ ବୋମା,
ନିର୍ଦ୍ଦୟ ଶାସକବର୍ଗ ଧରି ପରେ ମାନବେ କଷଣ,
ତବ କୃତ କର୍ମଫଳେ "ଫୁଲ ଫଳ ଜଳବାୟୁ" ନହେଉ ଦୂଷଣ ।
ଫୁଟୁ ମାନବର ପ୍ରାଣେ ସଜଫୁଟା ଫୁଲପରି ହସ,
ବଞ୍ଚିରହୁ ମାନବ ସଭ୍ୟତା, ଦଣ୍ଡ, ଦିନ, ପକ୍ଷ, ମାସ, ବର୍ଷ,

ଶାନ୍ତି, ଶାନ୍ତି, ଶାନ୍ତିର କପୋତ,
ନିର୍ଭୟରେ ଟିକି ଡେଣା ତୋଳ,
ଉଡ଼ି ବୁଲୁ ସୁନୀଳ ଅମ୍ବରେ,
ଦୂରେ ଯାଉ ଯୁଦ୍ଧ ବିଭୀଷିକା, ମୃତ୍ୟୁ ଭୟ,
ଭାରତର ଜନଗଣ, ବିଶ୍ୱଜନଗଣ ସାଥ,
ଉଡ଼ାଇ ମୈତ୍ରୀ ନିଶାଣ, ଯୁଦ୍ଧହୀନ ମୁକ୍ତ ନଭେ,
ସୃଜିବାକୁ ବିଶ୍ୱଶାନ୍ତି, ଭରିବାକୁ ବିଶ୍ୱ ପ୍ରାଣେ ପ୍ରୀତିର ପିୟୂଷ,

ଓଁ ଶାନ୍ତି ଶାନ୍ତି ମନ୍ତ୍ରେ ହୋଇବେ ଦୀକ୍ଷିତ,
ଅମୃତମୟ ସୁନ୍ଦର ହୋଇବ ପୃଥିବୀ ॥

# ସ୍ୱପ୍ନ-ଏକ ଶିଶୁର

ସୁଧାଂଶୁ ଶେଖର ବାବୁ
ସମଗ୍ର ହାଇସ୍କୁଲ, ବଲାଙ୍ଗିର

ହୋଇପାରେ,
ଗୋଟିଏ ଦଶନ୍ଧି ଠାରୁ କିଛିଟା ଅଧିକ
ତା'ପରେ.........।
ଏକବିଂଶ ଶତାବ୍ଦୀ
ଏକ ଚେଲେଞ୍ଜ, ପଲିସି ଓ ପାର୍ସପେକ୍ଟିଭ୍‌ର
ସ୍ୱପ୍ନ ନେଇ ଗଢ଼ାହେବ ସିନା।
କିନ୍ତୁ ଯେ,
ବର୍ତ୍ତମାନ (ଶିକ୍ଷାର) ମାପକାଠି
ହତ୍ୟା, ଧର୍ଷଣ, ଲାଞ୍ଚ ମିଛ ଓ ଭଙ୍ଗ ପ୍ରତିଶ୍ରୁତି
ସନ୍ନିବେଶିତ ହୋଇ ରହିଯିବ ଅକ୍ଷତର
ହମାନ୍ଧପୁସ୍ତ କେ ଡ଼ଏ ପୃଷ୍ଠାରେ । ୧ ।

ଭୋକଲା ପେଟର ଧ୍ରୁବ ଓ ନଚିକେତା
ଭିକାଗ୍ଧ ସାଜିଥିବା ଦ୍ରୋଣାଚାର୍ଯ୍ୟମାନେ
ଜାଣିପୁ ସଂହତିର ସ୍ୱପ୍ନ ଦେଖୁଥିବେ । ୨ ।

ଅନେକ ଅତ୍ୟାଚାରରେ ଛିନ୍ନ ହୋଇଥିବା
ସରଗର ତା'ର ଆଉ ଫୋଫଲ ମାନେ
ରକ୍ତରେ ଜୁଡ଼ୁବୁଡ଼ୁ ହୋଇ ଦଗ୍ଧ ଥିବେ
ନାଳନ୍ଦା, ତକ୍ଷଶୀଳା ଗୁରୁକୁଳର ଶାନ୍ତ ପରିବେଶ । ୩ ।



# ଧ୍ୱଂସ ପ୍ରତି ଧାବିତ ମାନବ ଉଦ୍ଦେଶ୍ୟରେ

ଗୌରୀଶଙ୍କର ପଣ୍ଡା, ଶିକ୍ଷକ
ଗଣପ୍ରତାପ ହାଇସ୍କୁଲ୍, ବରଗଡ଼
ସମ୍ବଲପୁର

ହେ ମାନବ !
ସଭ୍ୟତାର ଖୋଳ ପିନ୍ଧି
ଅସଭ୍ୟତାର ପ୍ରତିମୂର୍ତ୍ତି ତୁ ।
ଏଟମ ବୋମ୍ବର ପାହାଡ଼ ଉପରେ ଶୋଇ
ଦେଖୁଛୁ ତୁ ସୁଖ ସ୍ୱପ୍ନ !!
ବିଜ୍ଞାନରେ ବଳୀୟାନ୍ ହୋଇ
ଭାବୁଛୁ କି
ଚନ୍ଦ୍ର ପୃଷ୍ଠେ ରଚିବୁ ତୋ ସୁନ୍ଦର ସଂସାର ?
ତୋ ସଂସାର, ଦୟା, କ୍ଷମା, ସତ୍ୟ ବିବର୍ଜିତ,
କ୍ରୋଧ, ଈର୍ଷା, ପରାର୍ଥ ଶୋଷଣେ
ତୋ ମସ୍ତିଷ୍କ ସତତ ଚିନ୍ତିତ ।
ଦାରିଦ୍ର୍ୟ, ବୁଭୁକ୍ଷା, ରୋଗ, ନାରୀ ନିର୍ଯ୍ୟାତନା
ଶିଶୁ ହତ୍ୟା, ସନ୍ଥ-ନିଷ୍ପୀଡ଼ନ
ଦୁଷ୍ଟଜନ ପ୍ରତିପାଳନରେ
ତୋ ହୃଦୟ ସଦା ଆହ୍ଲାଦିତ ।
ପକ୍ଷପାତିତାର ବାହା, ତୋ ବୁକୁରେ ସଦା ନିନାଦିତ
ସାମ୍ୟ ମୈତ୍ରୀ ଫାଙ୍କା ଆବାଜରେ
ତୋର ପ୍ରାଣ ସଦା କଳୁଷିତ
ଆଶଙ୍କା, ଆତଙ୍କ ଭୟ ସନ୍ଦେହର ନିରନ୍ଧ୍ର ଅନ୍ଧାର
ନିବିଡ଼ ନିଷ୍ପେଷଣ ନର ହୁଏ କଲବଲ ।
ତଥାପିରେ ନିଷ୍ଠୁର ପିଶାଚ
ତୋ ହୃଦୟେ ଦୟାର ଝଲକ
ଉଦୟ ତ ହୁଏ ନାହିଁ......
ତୋ ଆତ୍ମା କି ଲୁଳୀଶୁ କର୍କଶ ?

ତୋ ସଭ୍ୟତା ଧ୍ୱଂସ ଅଭିମୁଖୀ
ତଥାପି ତୁ, ପ୍ରକୃତ ଚୂଳକୁ
ଅଦମିକା-ଡଣ୍ଡିମ ବାଦନେ ।

କିନ୍ତୁ ମନେରଖ ରେ ମୂଢ଼ ଅଧମ
ଗଢ଼ିବ ମୋ ସୁନ୍ଦର ସଂସାର
ସାଜିବ ମୁଁ ଧ୍ରୁବ ।

ସାଧନାର ଶକ୍ତି ନେଇ ସଂସ୍କରିବ ମୁକ୍ତିର ମୟୂଖ
ନସ ତେଜରେ ତୋର ଯେତେ ଗର୍ବ ଅଭିମାନ
ଆସ୍ଫାଳନ ପଡ଼ିଯିବ ଫିକା
ସାଜି ନଚିକେତା, ଫେରାଇ ଆଣିବ ମୃତ୍ୟୁ, ଯମର ଦୁଆରୁ
ଜରା ବ୍ୟାଧି ରୋଗ, ଶୋକ, ସଂତପ୍ତ ସଂସାରୁ
କରି ତିରୋହିତ
ସାହସ ଓ ଅଭୟର ବହ୍ନି ଜାଳି,
ଦିଗେ ଦିଗେ କରିବ ବନ୍ଦିତ ।

ସବ୍ୟସାଚୀ ସାଜି
ସେବାଧର୍ମ କର୍ମର କାର୍ମୁକେ
ସଂରଚିବ ଭୀଷ୍ମ ଶରଶଯ୍ୟା ।

ସାଜି ପ୍ରହଲ୍ଲାଦ ଭୟ କ୍ରୋଧ-ହିରଣ୍ୟ କଶିପୁ
ମୋ ଉପରେ ଲଂଭିବ ସମାଧି ।

ବୁଦ୍ଧିମନ୍ତେ ହୋଇବ ଦୀକ୍ଷିତ
ଅହିଂସାର ପଥ ଅନୁସରି
ସସାଗରା ଧରାରେ ମୁଁ ବୁହାଇବ କରୁଣାର ଧାରା,
ଅଶାନ୍ତିର ପାରାବାରୁ ଉତ୍ତୋଳିବ ଶାନ୍ତିର ମୁକୁତା
ହେବ ମୋ ସଂସାର, ଯୁଦ୍ଧ ବିରହିତ
ସତ୍ୟ, ଧର୍ମ, ଦୟା, କ୍ଷମା
ଶାନ୍ତିର ଆସ୍ପଦ ।



## ଗୋଟିଏ ସନେଟ

# ଛଞ୍ଚାଣ ଓ କପୋତ

ଯୋଗେନ୍ଦ୍ର ନାଥ ଦାସ
ରସମତଳା ଉଚ୍ଚ ବିଦ୍ୟାଳୟ, ମୟୂରଭଞ୍ଜ

ହୁତ୍ ହୁତ୍ ହୋଇ ଚଳୁଛି ସମାଜ ଝଡ଼ର ଇଗଲ ସାଜି
ପୁଣି 'ଷ୍ଟାରଓ୍ୱାର' ଦ୍ୱିଗୁଣିତ କରି ଦ୍ରୁତକର୍ମ କରେ ପ ଜି ॥

ଆରବ ଦେଶ ଉଠିଛି ପଡ଼ିଛି ଯୁଦ୍ଧ କମାଣ ମାଜି ।
ଯବନ-ପବନ ଦିଏ ଝାମ ରଡ଼ି ପଶ୍ଚିମ ଗଗନେ ଆଜି ॥

ଦାରିଦ୍ର୍ୟ ରାକ୍ଷସ ଦିଏ ଅଟ୍ଟହାସ୍ୟ ଅଭାବ ଅଶାନ୍ତି ହସ୍ତେ ଧରି ।
କ୍ଷୁଧା ଲେଲିହାନ ଚୁମ୍ବୁଛି ଆକାଶ ଧୂର୍ଜ୍ଜଟୀ ଜଟା କର୍ମ ତ କରି ॥

ଅନଳ ବର୍ଷେ ଗଗନେ ଆଜି ଧ୍ୱ ସଲ୍ଲିଳା ପାଞ୍ଚି ।
ଧ୍ୱଂସ ମୁଖୀ ସମାଜ ଶନ୍ତେ ସଚେତ କି ରକ୍ଷିବ ସୃଷ୍ଟି ॥

ଶାନ୍ତି ହିଲ୍ଲୋଳ ଖେଳୁଛି ଗଗନେ ମୃଦୁ ମଳୟ ସଙ୍ଗେ ।
ଦିଗନ୍ତ ବ୍ୟାପୀ କପୋତ ପକ୍ଷ ମେଲାଇ ନାନା ରଙ୍ଗେ ॥

ଦିବ୍ୟ ଦୃଷ୍ଟି ଦିବ୍ୟାଲୋକେ ଉଭାସୁ ତାର ଚଞ୍ଚଳ ଚକ୍ଷୁ ।
ରଜତ କାନ୍ତି ବିକାଶୁ ଶାନ୍ତି ଝରାଇ ଅମୃତ ବକ୍ଷୁ ॥

ପୁଣି ଦିନ ଆସୁଛି କପୋତ ଚର ଶାନ୍ତ କର ମନ ।
ଝଡ଼ ଛଞ୍ଚାଣ ବୁଡ଼ିବ ଯାଇ ଭାରତ ସାଗରେ ସେଦିନ ॥



# ଗୁରୁ ଉପହାର

ପ୍ରଭାକର ବାରିକ, ଅଧ୍ୟାପକ
ସାଲେପୁର ଟ୍ରେନିଂ କଲେଜ

ଅଜ୍ଞାନ-ଅମା ନଇଁ ଆସୁଥିଲା, ବିଜ୍ଞାନ-ବାମା ଛୁଇଁ ଆସୁଥିଲା,
ଆର୍ଯ୍ୟ-ଉଦ୍ଦାମତା ଧାଇଁ ଯାଉଥିଲା ବନ୍ୟ-ବେପଥୁ ଛାତରେ,
ପ୍ରତୀଚୀ-ସଂସ୍କାର ଝଙ୍କାର ତୋଳିଲା, ପ୍ରାଚ୍ୟ-ଅନୁରାଗ ଆନ୍ଦୋଳିତ ହେଲା,
ଲମ୍ଫ ଦେଉଥିଲା ପ୍ରତୀଚୀ-ପ୍ରଣୟ-ସିନ୍ଧୁ ମନରେ । ୧ ।

ଡୁବି ଆସୁଥିଲା ସଂସ୍କୃତି-ସୂର୍ଯ୍ୟ ଲିଭି ଆସୁଥିଲା ଜ୍ଞାନର ଶୌର୍ଯ୍ୟ,
ତମିସ୍ରା ବଳୟ ଆବର୍ତ୍ତିଲା ଆର୍ଯ୍ୟ ଚେତନା ଧାରା,
ସଂସ୍କୃତି ଲଳନା ଆଭରଣ ଛାଡ଼ି ଗୁରୁ-ଗଉରବ ବଳୟ ଭାଙ୍ଗି,
ଭାସ୍ୱର ଭାରତ ପାଲଟି ବସିଲା ଅଜ୍ଞାନ-କାରା । ୨ ।

ଓଁକାର-ପୂତ ଗୁରୁକୁଳାଶ୍ରମ, ଇନ୍ଦ୍ରପଦ ନିନ୍ଦା ଗୁରୁର ଆସନ,
ଯହିଁ ଲୋଟୁଥିଲା ନର ପତି ଶିର-ମୁକୁଟ ମଣି;
ଜଟାଜୁଟ ଧାରୀ ଦୃପ୍ତ ଲଲାଟ, ଧୀର ନେତ୍ର କୋଣେ ପ୍ରଜ୍ଞା-ପ୍ରକଟ,
ଜ୍ଞାନର ଆଲୋକ ସ୍ଫୁରୁଥିଲା ଯହିଁ ତପନ ଜିଣି । ୩ ।

ଦୃପ୍ତ ସେ ଗୁରୁତ୍ୱ ଲୁପ୍ତ ହୋଇଲା, ଦ୍ରୋଣଙ୍କର ଶକ୍ତି ସୁପ୍ତ ହୋଇଲା,
ଏକଲବ୍ୟର ନଷ୍ଟ-ଚେତନା ଚମକ ଗୁହିଁ;
ମୃତ୍ତିକାର ଦ୍ରୋଣ ଅଭିମନ୍ତ୍ରିତ, ଧନୁ ଆଉ ତୂଣ ଯଥା ଯନ୍ତ୍ରିତ,
କୁରୁ-ପାଣ୍ଡବର ଈପସିତ ଗୁରୁଦେବ ରହିଲେ କାହିଁ ? । ୪ ।

କୁରୁ-ପାଣ୍ଡବର ଅସ୍ତ୍ରଗୁରୁ ଆଜ ଯାଇଅଛି ଶୋଇ,
ଏକଲବ୍ୟର ଅଳସ ଚେତନା ମରେ ଆଜ ହାଇ,
କଚ ଆଜ ବନ୍ଦୀ ଲାସ୍ୟ-ଚଞ୍ଚଳା ଦେବଯାନୀ ପ୍ରିୟା ପାଶେ;
ଦୈତ୍ୟ ଗୁରୁର ନିଦ୍ରା ତ ଭାଙ୍ଗୁନି, ଦେବଯାନୀ ପ୍ରାଣେ ଚମକ ଜାଗୁନି,
କଚ ଆଜିର ସଂନ୍ୟସ୍ତ ନୁହେଁ ଦାନବ ଗୁରୁର ହାସେ । ୫ ।

ଚିର-ଜାଗ୍ରତ ଏ ଆର୍ଯ୍ୟ ସଂସ୍କୃତି ଯାଇଅଛି ଆଜ ଶୋଇ,
କ୍ଷେତ ବାନ୍ଧିବାକୁ ଆରୁଣି ଯାଉଛି, ଧୌମ୍ୟ ତ ଖୋଜୁନାହିଁ,
ଉପମନ୍ୟୁର ଚକ୍ଷୁ ଯାଉଛି ହଜି;
ନଷ୍ଟ ଚକ୍ଷୁରେ ଦୃଷ୍ଟି ଭରିବାକୁ, ଅଜ୍ଞାନ-ତମିସ୍ରା ନାଶ କରିବାକୁ,
ଅଶ୍ୱିନୀକୁମାର ଧାଇଁ ଆସୁନାହାଁନ୍ତି ଆଜ । ୬ ।

ଗୃଧ୍ରକୂଟର ସପ୍ତପର୍ଣ୍ଣିରେ, 'ବୁଦ୍ଧଂ-ଶରଣଂ-ଗଚ୍ଛାମି'ର
ସେ ଶାନ୍ତ ଉଦାତ୍ତ ସୁର,
ହାୟରେ ହାୟ ! ଶୁଣିପାରୁନାହିଁ ମାଗଧୀ-ଲାସ୍ୟ-ବିଳାସୀ ବିମ୍ବିସାର,
ସେ ସୁରତ ଆଉ ନାହିଁ;
ଅନ୍ଧକାରାଗାର ରୁଦ୍ଧ କକ୍ଷରେ, ଘନ ଅଜ୍ଞାନ-ତମିସ୍ରା ବକ୍ଷରେ,
ବିମ୍ବିସାର ରହେ ମୃତ୍ୟୁ ପଥକୁ ଚାହିଁ । ୭ ।

ମୃତ୍ୟୁ ପଥ ଯେ ଧ୍ୱଂସର ପଥ, ସେ ପଥ କି କରେ ସୃଷ୍ଟିର ଜୟଗାନ ?
ସାନ୍ଦୀପନିର ପଟ୍ଟଶିଷ୍ୟ ହେ ! ଜଗତର ଗୁରୁ,
ତୁମେ କି ଚାହିଁ ଏ ଗୁରୁ-ଶିଷ୍ୟ ବ୍ୟବଧାନ ?
ହେ ଆର୍ଯ୍ୟ ସଂସ୍କୃତି-ସଂସ୍କାର ସହଧର !
ତୁମେକି ପ୍ରଭୁ ହେ ଦେଖିପ ରୁନାହଁ, ତୁମେକି ସଖାହେ ଜାଣିପାରୁନାହଁ,
ସଂସ୍କୃତି ରକ୍ଷାର୍ଥେ ତୁମେତ ଆସିଛ ଧରାକୁ ଅନେକ ଥର ! ୮ ।

ପାର୍ଥ-ସାରଥି ସାଜିଛ ସଖାହେ, ସଂସ୍କୃତି ରଜ୍ଜୁ ହସ୍ତେ ଧରିଛ ଭିଡ଼ି
ଦକ୍ଷ ତୁମର ଚାବୁକ ପ୍ରହାରେ, ସଭ୍ୟତା-ରଥ ଚାଲିଛି ଆଗକୁ ମାଡ଼ି,
ଅଧର୍ମ ଯାଇଛି ହାରି;
ଧର୍ମ-ସଂସ୍ଥାପକ ଆର୍ଯ୍ୟ-ସଖା ହେ ! ଦେଖିପ ରୁନାହଁ ?
ସାରା ଏ ସୃଷ୍ଟି ତୁମ ପ୍ରତୀକ୍ଷାରେ ଆଜି । ୯ ।

ହେ ସଂସ୍କୃତି-ପିତା ! ହେ ବିଶ୍ୱର ଗୁରୁ !
ଆଉ ଥରେ ତୁମେ ଦୃଷ୍ଟି ଦେଇ ଯାଅ ଚାହିଁ,
ଗୁରୁ ଶିଷ୍ୟର ସମ୍ପର୍କ ନୁଆରେ, ଏ ଯେ କଳଙ୍କ ତ ଭିଡ଼ି ଆସିଛି ନଇଁ,
(ଏ) ଘନ ତମିସ୍ରାର ହୋଇଯାଉ ଅବସାନ୍ ;
ସଂସ୍କୃତିର ସୂର୍ଯ୍ୟ ଉଜ୍ଜ୍ୱଳ ଉଠ, ଦୀକ୍ଷା-ଦୀପାଳି ପ୍ରଜ୍ୱଳି ଉଠୁ,
ହେ ପରମ ଆର୍ଯ୍ୟ ! ସୃଷ୍ଟି କରୁଥାଉ,
ଚିର ତୁମ ଜୟଗାନ୍ । ୧୦ ।



# — ଆହ୍ୱାନ —

ପ୍ରକାଶ ଚନ୍ଦ୍ର ବଳିଆରସିଂହ ମହାପାତ୍ର, ଶିକ୍ଷକ
ନୟାହାଟ ହାଇସ୍କୁଲ, ପୁରୀ

ଏଇ ମୋ ଭାରତ ମାତୃସମା ମୋ ଜନ୍ମଭୂମି
ବହୁ ମୁନି ଋଷି ସିଦ୍ଧ ସାଧକ କର୍ମ ଭୂମି
ସାଗର ମେଖଳା ଶିରେ ତା'ର ହିମ ମୁକୁଟ ଝଳେ
ସାର୍ଥକ ଆମ ଜନମ ଜୀବନ ତାହାରି କୋଳେ । ୧ ।

ଆମ ରାମାୟଣ ପୁଣ୍ୟ ପୁରାଣ ମହାଭାରତ
ଏକଇ ଧର୍ମ ଅନେକ ଭାଷାରେ ହେଉଛି ଗୀତ
ସନ୍ଥ କବୀର, ବୁଦ୍ଧ ଶଙ୍କର ମହାନ୍ ବାଣୀ
ମହାଭାରତୀୟ ମନ୍ତ୍ରେ ଦୀକ୍ଷିତ ସକଳ ପ୍ରାଣୀ । ୨ ।

ସାବରମତିର ମହାମାନବର ସାଗର ତୀରେ
ସକଳ ଧର୍ମ, ଭାଷା, ଜାତୀୟତା ଶରଣ ନେଲେ
ଲଜପତ୍, ବୀର ସର୍ଦ୍ଦାର, ବାହାଦୂରଶାହା ଭଲ୍ଲି ପନ୍ତ
ଉଦାତ୍ତ ସୁରେ ଗାଇଲେ ଜାତିର ଜୈନ ଗୀତି । ୩ ।

ଫିରିଙ୍ଗି ବେପାରୀ ସାମ୍ରାଜ୍ୟବାଦୀ ଶାସନ ଶେଷେ
ରାମ୍-ରହିମ୍ ଉଭାକଲେ ଆଗେ ଭିନ୍ନ ଭେଷେ
ବହୁ ସାଧନାର ସ୍ୱାଧୀନ-ସୂର୍ଯ୍ୟ-ସ୍ୱର୍ଣ୍ଣ ଆଭା
ଫୁଟୁ ନ ଫୁଟୁଣୁ, ନୂଆଖାଲି ବୁକେ ଝଲସି ଉଠିଲା ରକ୍ତ-ଜବା । ୪ ।

ଏ ଦେଶ ପିନ୍ଧିଛି ଜାତି-ବିଦ୍ୱେଷ-ହିଂସ୍ର ମୁଖା
ଲେଲିହାନ ଆଜି ଉଗ୍ରବାଦର ଅଗ୍ନି ଶିଖା
ହୃଦ କନ୍ଦରୁ ପ୍ରୀତିପଦ୍ମରୁ ପୀୟୂଷ ଲୁଟି
ଇଜମ (ism)ର ପାରା ଗୁମୁରି ଗୁମୁରି, ଗଗନେ ପବନେ ଯାଉଛି ଲେଟି ।
ସୀମାନ୍ତେ ଆମ ଶତ୍ରୁ କମାଣ ଗର୍ଜି ଉଠୁଛି ଥରକୁ ଥର
ଗଙ୍ଗା କୂଳରୁ ଶତଦ୍ରୁ ଯାଏ ଦେଶ ଭଙ୍ଗର ଭିନ୍ନ ସ୍ୱର । ୬ ।

ଆମେ ମାନୁବୁନି ମାର୍କିନ ବୋମା, ତାରକା ଯୁଦ୍ଧ
ବିଶ୍ୱର ଲାଗି ନିଃସ୍ୱ ସାଜିବୁ, ସବୁରି ସେନେହେ ଆମ ଅନ୍ତର ସରଳ ଶୁଦ୍ଧ ।

ଡ଼ାକେ ମହାକାଳ ଜାତିଅର୍ଗଳ ଫିଙ୍ଗି ଦୂରେ
ପ୍ରାଦେଶିକତାର ସୀମା ଡେଇଁ ଗାଅ ଗୋଟିଏ ସୁରେ
(ଜାତି) ଜାତିର ତ୍ରିଶଙ୍କ ତିରଙ୍ଗା ତଳେ ଗୋଟିଏ ଗାନ
ଆଗେ ଭାରତୀୟ, ପଛେ ଆମେ ହିନ୍ଦୁ ମୁସଲମାନ । ୮ ।

ଏ ଜାତି ଭାଗ୍ୟ-ଆକାଶେ ପ୍ରକାଶେ ସମାଜବାଦର ନୂତନ ଜାତି
ଏ ଜାତି ଶୁଣାଏ ବିଶ୍ୱ ମାନବେ, ପଞ୍ଚଶୀଳର ସାମ୍ୟ ନୀତି
ଜାତିର ସ୍ୱାର୍ଥ ଦିଅ କୁର୍ବାନ, ଜାତୀୟ ସ୍ୱାର୍ଥ ବଡ଼ ଆଜ
ଆମେ ମହାପ୍ରାଣ, ଏଇ ଆହ୍ୱାନ ଗଗନେ ପବନେ ଉଠଇ ବାଜ । ୯ ।



# ଚକ୍ ଭିତରେ ଡ଼ନାମାଇଟି

ଲକ୍ଷ୍ମୀଧର ଗିରି
ଶ୍ରୀଗୁରୁ ହାଇସ୍କୁଲ, ମୟୂରଭଞ୍ଜ

ଚକ୍ ଭିତରେ ଡ଼ନାମାଇଟି କାହିଁରେ ମଣିଷ ଗୃହିଁ,
ଜାଳିବାକୁ ନୁହେଁ ବିଶ୍ୱ ଜୀବନ ଦିଏ ଶାନ୍ତିର କହି । ୧ ।
ଚକ ଭିତରେ ଡ଼ନାମାଇଟ ନୁହେଁ ହିରୋସୀମା ପାଇଁ,
ନାଗାସାକି ଆଜି ଧ୍ୱଂସ ସ୍ତୂପରୁ ଶାନ୍ତିରେ ଡୁଏ ଠାଇଁ । ୨ ।
ଗୋଟିଏ ମନ୍ଦିର ମଣିଷ ଆମେମାନେ ଲକ୍ଷ୍ୟ ଆମର ଏକ,
ଚକ୍ ଭିତରେ ଡ଼ନାମାଇଟି ଭଖୁ ଶାନ୍ତିର ଟେକ । ୩ ।
ଗରଜି ଉଠେରେ ଡ଼ନ ମାଇଟି ଚକ୍ ଭିତରେ ଗୃହିଁ,
ମଣିଷ ମନରୁ ଉଡ଼ାଇନେବେ ସନ୍ତ୍ରାସବାଦୀ ବହି । ୪ ।
ଚକ୍ ଭିତରେ ଡ଼ନାମାଇଟି କାନେ କାନେ ଆଜ କହେ,
ବିଶ୍ୱର କେଉଁ କୋଣରେ କିଏ ଅମଣିଷ ହୋଇ ରହେ ? ୫ ।
ଅମଣିଷ ହୋଇ ରହେତେର କିଏ ବିଶ୍ୱର କେଉଁ କୋଣେ ?
ଚକ ଭିତରେ ଡ଼ନାମାଇଟି ଜଣିକାର ବିସ୍ଫୋରଣେ ! ୬ ।
ଡ଼ନାମାଇଟି ନୁହଁଇରେ ଏହା ନାହିଁ ଆତଙ୍କ ଭୟ,
ସଳଖି ଧରରେ ଶିକ୍ଷକ ଘାଇ ଶାନ୍ତିର ହେଉ ଜୟ । ୭ ।
ଶାନ୍ତିର ହେଉ ଜୟ, ଏ ବିଶ୍ୱ ଧ୍ୱଂସ ମୁହଁରୁ ଫେରି,
ଚକ୍ ଭିତରେ ଡ଼ନାମାଇଟି ବଜାଇ ଶାନ୍ତିର ଭେରି । ୮ ।



# ବିଶ୍ୱଶାନ୍ତି

ଗୋଲୋକ ବିହାରୀ ବେହେରା, ଶିକ୍ଷକ
ଗୁରୁଡ଼ିଝାଟିଆ ହାଇସ୍କୁଲ, କଟକ

ଉଚ୍ଚପ୍ରୀତି ନୀଚପ୍ରୀତି ଦୁଷ୍ଟପ୍ରୀତି ବହୁବିଧ ପ୍ରୀତି ଏହିପରି,
ବ୍ୟକ୍ତିପ୍ରୀତି ଗୋଷ୍ଠୀପ୍ରୀତି ପ୍ରାଣେ ପ୍ରାଣେ ରହିଅଛି ପୂରି ।

ଧର୍ମପ୍ରୀତି ଭାଷାପ୍ରୀତି ଦେଶପ୍ରୀତି ଜାତିପ୍ରୀତି ସଙ୍ଗେ ବିଶ୍ୱପ୍ରୀତି,
କି ମନ୍ୟ ଆଜି ଦେଶେ ଦେଶେ, ପ୍ରାଣେ ପ୍ରାଣେ ଭୂଲି ଅନ୍ୟ ସବୁବିଧ ପ୍ରୀତି ।

ସ୍ନେହ, ପ୍ରେମ, ରାଗ, ରୋଷ, ହିଂସା, ଦ୍ୱେଷ ସବୁ କିଛି ଅଛି ଏ ଜଗତେ,
ସବୁ ଦୁଃଖ ଭୋଗେ ପ୍ରାଣୀ ନିଜ କର୍ମ ଯୋଗୁଁ, ନର ଭୁଲିଯାଏ ସତେ ।

ଭ୍ରାତୃପ୍ରୀତି ବନ୍ଧୁପ୍ରୀତି ମାତୃଭାଷା ମାତୃଭୂମି ପ୍ରତି ଯେତେ ପ୍ରୀତି,
ଥାଉ ଯା ଅନ୍ତରେ ପଡ଼ି, ପ୍ରତି ଦେଶ, ପ୍ରତି ଜାତି କାମେ ବିଶ୍ୱପ୍ରୀତି ।

ଜାତି, ଧର୍ମ, ବର୍ଣ୍ଣ, ଦେଶ ନିର୍ବିଶେଷେ କାମେ ପ୍ରତି ଜନ, ସୁଖ, ଶାନ୍ତି,
କେବଳ ସରଳ ହେଲେ ମିଳେ ତାହା, ନାହିଁ ଏଥେ ଟିକେ ମୃଷା ଭ୍ରାନ୍ତି ।

କିନ୍ତୁ ଆଜି ଦେଶେ ଦେଶେ ସାରା ବିଶ୍ୱେ, ନର ଅତି ଜଟିଳ କୁଟିଳ,
ସୁଖ ଶାନ୍ତି ତେଣୁ 'ଆକାଶ କୁସୁମ' ନର ଭୁଞ୍ଜେ ବିଷମୟ ଫଳ ।

ଅଣୁ ଅସ୍ତ୍ର ପରମାଣୁ ବୋମା ଯୁଦ୍ଧତରୀ ସାଜସଜ୍ଜା ଗୃହେ,
ନକ୍ଷତ୍ର ସମର କାର୍ଯ୍ୟକ୍ରମେ ଆଜି ବିଶ୍ୱ ଖେଳ ସଜେଇବା ଚାହେଁ ।

ପଦ୍ମ ଧୂଆଁଧୂଆଁ ଦିବାପରି ପ୍ରଶ୍ନଚିହ୍ନିତ ଆମ ବିଶ୍ୱ ଶାନ୍ତି ଆଜି,
ଆସିବାକୁ ଡେରି ହୁଏ, ଡେରି ହେବ, ବହୁ ଡେରି, ଚିନ୍ତା ଘାରେ ଆଜି ।

ସବୁ କିଛି ସମସ୍ୟାର ସମାଧାନ ଅଛି, ତେଣୁ ଆମ ବିଶ୍ୱ ଶାନ୍ତି,
ସମସ୍ୟାର ସମାଧାନ ଆମେହିଁ କରିବା, ତେଜି ନୀଚ ପ୍ରୀତି ।



# ମୁଁ ତସର ଭଦ୍ରାକ୍ଷୀ

ହେମନ୍ତ କୁମାର ରାଉତ
ସପନେଶ୍ୱର ହାଇସ୍କୁଲ, କଟକ

ଜନ୍ମ ନେଲି ମୁଁ ପୃଥିବୀରେ ଯେବେ ମଣିଷର ରୂପ ନେଇ
ସେଦିନ ଫୁଟିଲି ଜୀବନ ବୃନ୍ତେ ଆଗାମୀ ସପନ ପାଇଁ
ଆପଣାର ପରିଚୟ
ଦେଖିବାକୁ ମୁଁ ଯେ ପାଇନାହିଁ ଦିନେ ଆଗାମୀ ସୂର୍ଯ୍ୟୋଦୟ
ଅବ୍ୟକ୍ତ ଏକ ବୃକ୍ଷେ ସେଦିନ ଫୁଟିଲି ଜୀବନ କଢ଼ି
ଧରଣୀ ଗର୍ଭେ ଖିମଭୈରବେ ପ୍ରଳୟ ଗର୍ଭି ଫାଡ଼ି
କୋଟି ଉଦ୍ଦାମ ନେଇ
ସେ କେଉଁ ବିରାଟ ରହସ୍ୟାବୃତ୍ତ ବିଶ୍ୱ ଜୀବନ ଫେଇ
ଭାବ ନେଇଥିଲି ଅପୂର୍ବ ସୂର୍ଯ୍ୟ ବକ୍ଷରେ ମୋର ବାସ
ତିମିରିତ ପଥ କରି ଆଲୋକିତ ଦେଖିବି ନିତ୍ୟ ଗ୍ରାସ
କାଳସର୍ପ ମୁଁ ଦଂଶନେ ମୋର ହୋଇବ ରକ୍ତକଣା
ଫୁତ୍କାର ଖାଲି କମ୍ପାଇଲିରେ ଦନ୍ତ ହୀନ ଟେମା ଫଣା
ନୟନେ ଜଟିଳ ବହ୍ନିର ଦାଉ ଥମିଲା ନାହିଁରେ ନାହିଁ
ଦୁର୍ବାର ପଥେ ଆଗାମୀ ପଥିକ ପାରିଲିକ କାନ୍ଧ ଥାଇ
ଭାଙ୍ଗିଲିନା ସେ ଗାଡ଼
ଶକ୍ତିହୀନ ମୁଁ ପାଲଟି ଗଲିରେ ପଙ୍ଗୁ ଅଥର୍ବ ଜଡ଼
ମୁଁ ଗୃହୁଁ ଥିଲି ମହା ନିଶ୍ୱାସେ ଶୋଷିବି ସିନ୍ଧୁ ଜଳ
ପିଶାଚ ମାଂସ ମହା ଉଦ୍ଦାମେ ଭକ୍ଷିବି ପଳ ପଳ
ଅପୂର୍ବ ବର୍ଷେ ଶୋଷକ ରକ୍ତେ ମେଣ୍ଟାଇବି ମୁଁ ଶୋଷ
ଅପୂର୍ବ ଦର୍ଷେ କଙ୍କାଳକୁ ମୁଁ ଦେଇପାରେ ଜୀବନ୍ୟାସ

ମେଣ୍ଟିଲନା ମୋ ତୃଷା

ଅଭିଶପ୍ତ ମୁଁ ଜଳି ଜଳି ଗଲି ଆଶାରେ ଉଦ୍ବନ୍ଧ ଆଶା
ଭାବିଥିଲି ଭଗ୍ନ ପଥେ ଗୁଳିବ ମଣିଷର ଦାବି ବାଡ଼ି
ବୃନ୍ତଚ୍ୟୁତ ମୁଁ ସ୍ୱକାଳ କଳିକା ଅକାଳେ ପଡ଼ିଲି ଝଡ଼ି
ମୁଁ ଗୁହାଁଥିଲି ଉଠାଇବି ଜନେ ମହା ତାଣ୍ଡବ ଝଡ଼
ମଣିଷ ରକ୍ତ ମାଂସରେ ଦିନେ ଗଢ଼ିଲି ଦ୍ୱିତଳ ଗଡ଼
ଆପଣାର ସେଇ ପରିଚୟ ପାଇଁ ମଣିଷକୁ ଦଳି ବଳି
ପୋକ ମାଛି ପରି ମଣିଷକୁ ଧରି ପ ଦତଳେ ଦେଲେ ସେ ଦଳି
ନେବାପାଇଁ ପ୍ରତିଶୋଧ
ବୁକୁର ରକ୍ତ ବୁକୁରେ ଫୁଟିଲା ପାଇଥିଲି ଖାଲି ବୋଧ
ମୁଁ ସେଇ ସିନ୍ଧୁ ଲକ୍ଷ ଲହରୀ ନିମିଷକେ ଉଠେ ଖେଳି
ମୋ ବେଳାଭୂମେ ସେଦିନ ଦେଖିଲି ନିରାଶାର ମରୁବାଲି
ଲକ୍ଷ ଲହରୀ ନିମିଷକେ ଉଠେ ନିମିଷକେ ହୁଏ ଲୀନ
ଏକ ପରେ ଏକ ପଥରେ ଧାଇଁଲି କରି ଭୀମ ଗରଜନ
ସବୁଠାରୁ ଗଲି ହାରି
ସେଦିନ ଆସିଲ ଫେରି
ସୃଷ୍ଟିର ଏକ ଜ୍ୱଳନ୍ତର ଗୁହା ମୁଁ ସେଇ ସାହାରାର
ଗର୍ଜିଉଠିବି ସେଇଦିନ ମୁଁ ରେ ରହିଥାଅ ଥରେ ଗୁହାଁ
ସୌର ଜଗତ ବି ନାଚିବ ତାରକା ସୂର୍ଯ୍ୟ ବି ଥର ଥର
ଦୃଷ୍ଟି ତୋଫାନ ଉଠିବ ସେଦିନ ଭାଙ୍ଗିବ କାରାଗାର
ଜ୍ୱଳନ୍ତର ସାହାରାର
କଙ୍କାଳ ଢେର ମଣିଷ ମୁହଁରେ
ମୁଁ ସେଇ ବିଦ୍ରୋହୀ ।



# ମାତୃଭୂମି

ଜ୍ୟୋସ୍ନା ମହାପାତ୍ର
ଶିଶୁଭବନ, କଟକ

ମାତୃଭୂମି ମାଆଟି ମୋର ଭୁବି
ତୋର କୋଳେ ଜନମ ଲଭି ହୋଇଛୁ ବଡ଼ ମୁହିଁ ।
ତୋର ପାଣି ପବନେ ଗଢ଼ା ମୋର ରକ୍ତ କଣା
ତୋର ଗଛ ଡାଳେ ମୁଁ ଝୁଲି ଖାଇବି ଶସ୍ୟ ନାନା ।
ନଦୀ ନାଳ ସାଗର ଯେତେ ଅଛୁ ତୋର ବକ୍ଷେ
ଆମର ପାଇଁ ତୋର ଭଲ କରନ୍ତି ସେବା ଦେଖେ ।
ମାଆଲେ ମା ତୋ ଆଦେଶେ ସଭିଏ ପରୋପକାରୀ
ମହୁମାଛି ସଞ୍ଚେ ମଧୁ ନିଜେ ରହି ଅନାହାରୀ
ତୋ କୋଳର ସବୁଜ ଘାସ ନରମ କୋମଳ
ସନ୍ତାନ ହିତେ ଲାଗିଛୁ ସଦା କରୁ ସଭିଙ୍କ ମଙ୍ଗଳ
ତୋର ସେବା ଆମ ଧରମ ନିତ୍ୟ ଉତ୍ତମ କରମ
କରୁଛୁ ପଣ ରଖିବୁ ମାଆ ଜଗତେ ତୋହର ନାମ
ତୋ ପାଶେ ନାହିଁ ଭେଦଭାବ ଧନୀ କାଙ୍ଗାଳ ଗୋରା
ନିର୍ମଳ ତୋ ସ୍ନେହ ଶାନ୍ତିଧାରା ସତେକି ଶୁଭ୍ର ଜ୍ୟୋସ୍ନାଧାରା
ଶୁଣୁନା ତୁ ଯେ କାହାର ଗାଳି ମାନୁନା କାହା ଅପମାନ
ତୋ ଗୁଣ କୀର୍ତ୍ତି ଯୁଗେ ଯୁଗେ ମାନବ ବକ୍ଷେ ଅମ୍ଳାନ
ତୋର ସେବା ପାଇଁକି ମା କେତେ ଯେ ତୋର ସନ୍ତାନ
ମରିଲେ ପଛେ ଡରିଲେ ନାହିଁ ବଢ଼ାଇଲେ ତୋ ସମ୍ମାନ
ତୋ ପେଟରୁ ଭଲକି ଭଲ ଖୋଳି ଆଣିଲୁ ଖଣି
ତଥାପି ତୋର ମହାଗରଭ ପାରିଲୁନାହିଁ ଜାଣି
ମାତୃଭୂମି ମାଆଟି ମୋର ପରମ ପ୍ରିୟ ଭୂମି
ନତ ପ୍ରଣତ ତା ପାଦ ତଳେ ଯିବାରେ ଆମେ ଚୁମି ।



# 'ଲଭା'

ଭାଗ୍ୟଧର ସାହୁ, ପ୍ରଧାନ ଶିକ୍ଷକ
ସମରେଶ୍ୱର ହାଇସ୍କୁଲ, ସାଉଡ଼ିଆ, କଟକ

ଅବିନାଶ ଆତ୍ମା ବିନାଶ ପଥରେ କୁହାଟ ଛାଡ଼େ
ଆଗାମୀ ଜୀବନ ସ୍ୱପ୍ନ ଝରଇ ବ୍ୟର୍ଥତାରେ ।
ଈପସିତ ଏଇ ଧରା ସ୍ୱର୍ଗରେ ମଣିଷ ହୁଅଇ ନର୍କକୀଟ ।
ଈଶ୍ୱର ବଡ଼ ଶଇତାନ !
ନହେଲେ କି ଆଜ ଜୀବନର ଏଇ ପିଚ୍ଛିଳ ପଥ ସୃଷ୍ଟି ହୁଅଇ
ଅନାକାଙ୍କ୍ଷିତ
ଅଶ୍ରୁତପୂର୍ବ
ବିଭେଦର ଏକ ଅଜବ ଫାଟ ??
ଶୋଧି ଚମଡ଼ାର ଝଞ୍ଜାଳୀ ଏଇ ପିଠିଟା,
ଛୁଟିକି ପଡ଼ଇ ଅଭିମାନ ସବୁ
"ଏ ଚମଡ଼ା ପାଇଁ କଣ୍ଠୁ ନୁହେଁ କେବେ ଶାସନ ଗାଦିର ଲୁଠିଟା ।
'ଭୋକେ ପିଇ ଦଣ୍ଡେ ଜଇ' ଆମେ ପତାକା ଟେକିବୁ
ସ୍ଲୋଗାନ୍ ଦେଇ କଣ୍ଠ ଫଟାଇବୁ
ଗଣ୍ଡିଲ ବନ୍ଧା ଧୋବଧାବଳିଆ ବାବୁମାନଙ୍କର କାବୁ କରିଦେବୁ,
ଏ ସମାଜ କ୍ଷେତ
ଯୋଡ଼ି ଦେଇ ଯିବୁ ଗସ୍ତା କଡ଼ରେ
ଶସ୍ତା ଦରରେ ସମାଜବାଦର ଗୁଦରେ
ନାଲି ଗ୍ଲୁ' ପାଣି ମୁଣ୍ଡି ଭସାଣିରେ ମଶାଣି ପର୍ଯ୍ୟନ୍ତ ହସି ଧାଇଁ ଯିବୁ
ଫ୍ରିନ୍ଫଟ କଣ୍ଠ ଦରକାର ନାହିଁ
ଜାମଚଲା ଏଇ ବଜେଟ୍ ନେଇ
ଗାଦିରେ ଥାପିବୁ ସଂଖ୍ୟାଗରିଷ୍ଠ ବରିଷ୍ଠ ଦଳ
ସରଗ ହୋଇବ ଅପରିଚ୍ଛନିଆ ଧୂସର ଏଇ ଧରାରେ ।
ହାଇରେ ମଣିଷ ପିଲ୍
ହାଇପି ସାଇପି ଜୀବନ ତମାମ ହେଲେ ନ ଜଳାଇ ଚୁଲ୍ଲୀ ।
ଜମାଟ ବନ୍ଧା ତୁଷାର ହୃଦୟେ ଉଷାର ଅରୁଣ ଦେଖିବୁନି ଅବା କେବେ ?
ତରଳନ୍ତା ଅବା ଉତ୍ତାପ ପାଇ ସୁଯୋଗ ଆସନ୍ତା ଯେବେ ।
କିଏ ସେ ତାନ୍ତ୍ରିକ ?? ମନ୍ତ୍ରରେ ଯା'ର ସୃଷ୍ଟି ହୋଇବ ଅଗଣିତ ରକ୍ତଜବା,
କାହିଁ ସେ ମନ୍ତ୍ର ?? ଘୁମନ୍ତ ଶିଳାରେ ସ୍ଫୁରିତ ହେବ ଆଗ୍ନେୟଗିରି 'ଲଭା' ।

# ଆମ୍ଭ ସମୀକ୍ଷା

ଶ୍ରୀ ବୃନ୍ଦାବନ ସାହୁ, ଯୁଗ୍ମ ସମ୍ପାଦକ
କଳାହାଣ୍ଡି ଜିଲ୍ଲା ମାଧ୍ୟମିକ ଶିକ୍ଷକ ସଂଘ

ହେ ମୋ ମାଟିର ଆର୍ଯ୍ୟ ଗୁରୁକୁଳ !
ମାଟିପିଣ୍ଡେ ଫୁଙ୍କେ ଯେହୁ ପ୍ରଣବ ଓଁକାର
ଅଜ୍ଞାନର କାଳିମା ବିନାଶି
ଜ୍ଞାନାଲୋକ ପଥେ ନିଅ ବରି
ମୃତ୍ୟୁ ପରୁଁ ଅମୃତର ଭାଷା
ଦେଇକରି ପଶୁତ୍ୱର ବନ୍ଧନରୁ ମୁକ୍ତ
ହାୟ !!
ସିଏ ଆଜ
ଅସତ୍ୟ ଓ ଜଡ଼ତା ପଥରେ
ଉଦଭ୍ରାନ୍ତ ପଥିକ
ଅଜ୍ଞାନର ମୋହ ନିଦ୍ରା ସକ୍ତ
ମୃତ୍ୟୁପଥେ ଧାଏଁ ଅହରହ
ସ୍ୱାର୍ଥପଙ୍କେ ଉବୁଟୁବୁ ହୋଇ
କିପରି ହେବ ସ୍ରଷ୍ଟା
ନିର୍ମାଣର କାଳର ଭାରତ ?
ହେ ଉଦିତ ମାର୍ତ୍ତଣ୍ଡ ।
ନାଶ କର ମୋ ମାନସୁ କ୍ଷୁଦ୍ର ସଂକୀର୍ଣ୍ଣତା
କଳୁଷର ସକଳ ଲାଞ୍ଛନା
ଅମୃତର ଦିବ୍ୟବାଣୀ ସ୍ଫୁରୁ ଏ ଅନ୍ତରେ
ତାରିବାକୁ ବ୍ୟାଧିଗ୍ରସ୍ତ ଶାପଗ୍ରସ୍ତ ଏ ମଣିଷ କୁଳ
ନବ୍ୟ ଦିବ୍ୟ ଭବ୍ୟ ଭାରତର
ନିର୍ମାଣୀ ମୁଁ
ଦିଅ ହେ ଶକତି
ନିର୍ମାଣିବି ଏକବିଂଶ ଯୁଗର ଭାରତ ।
ଆସ ହେ ଶିକ୍ଷକ ଭାଇ
ଆର୍ଯ୍ୟର୍ଷି ସୁଯୋଗ୍ୟ ଦାୟାଦ
ଗାଇବା ଉଦ୍ଦାମ ସୁରେ ଭେଦ ସବୁ ଭୁଲି ଏକାଠିବେ —
ଓଁ ସହନାବବତୁ ସହନୌ ଭୁନକ୍ତୁ
ସହବୀର୍ଯ୍ୟଂ କରବାବହୈ ତେଜସ୍ୱିନାବଧୀତମସ୍ତୁ
ମା ବିଦ୍ୱିଷାବହୈ ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

# ପ୍ର ବ ଞ୍ଚ ନା

❁ ପ୍ରଭାକର ବେହେରା

ପ୍ରବଞ୍ଚନାର ମସ୍‌ନଦ ପରୁ ବାରବାର ଆମେ
ଶୁଣିଛୁ କେତେ କଣ୍ଠ ମଧୁର ଉଚ୍ଚାଟ ଡାକ
ତୁମେ ଆଜ ସେହି ମସ୍‌ନଦେ ବସି କୁହାଟ ଛାଡ଼ୁଛ
ବଦଳାଇ ଦେବ ଆମର ଯେତେକ ପୁରୁଣା ଭେକ
ସ୍ୱାର୍ଥର ଅଧିବାସ

ସରନାହିଁ ଯହିଁ ମଣିଷର ପାଇଁ ମଣିଷ ମରଇ;
ଗରବ ହେଟାଓ ପର ତୁମେ ଆଉ
କରନାହିଁ ଉପହାସ ॥

ଶୁଣିବକି ଟିକେ ! ତୁମ ବାପ, ଅଜା, ମା' କହି-କହି
ଛାଡ଼ିଗଲେ ଘଟେ ଯେତେକ ଅଳନ୍ଦୁ ଏଠି
ତୁମେ ଆଣିବାକି ବଂଶ ଏକାଇ ଶତାବ୍ଦୀକୁ ନେଇ
ଗଢ଼ିଦେବ ନୂଆ ପିଯୂଷ-ପିଆଲି ପୁରୁଣାକୁ ମାଠି ମୁଠି
ରଚିଲି ମୁଁ ଅଭିସାର

ଥିଲେ ଆଜି ଯେତେ ରଜା ପରଜାର ଅଭିମାନ ସାନ ବଡ଼
ଭୁଲିବାକୁ ହେବ; ଆସ ମୋର ସାଥେ
ଯାହା ମୋ' ଦୁଆର ॥

ନବୋଦୟ-ସ୍କୁଲ୍ ମେଜକ୍ ଭିତରୁ ଉଦ୍ଧୁରିବେ ଯିଏ—
ସିଏ ଆଉ କହୁ ଯନ୍ତ୍ର-ମାନବ ଯିବେ ତୁମରି ସାଥେ
ଆମେ ମୂର୍ଖଦଳ, ଜୀବନ ଯାଁଙ୍କର ହୁଏ ତଳ ତଳ
ଟାଳିବାର ନୁହେଁ ରଜାଙ୍କ ଆଦେଶ, ଯିବୁ ସବୁ ସେହି ପଥେ
ସାଥେ ନେବା ବାଛୁ ବାଛୁ

ରହାଜାମା ଆଉ ନାରୀ ଧର୍ଷଣେ-ପ୍ରବୀଣ ଯେମାନେ
ଦେଶୀ-ବିଦେଶୀରୁ ମଦିରା ପିଆଲି
ଚମ-ଚଟା-ଦଳ କହୁ ॥

ନିବୋଦୟ-ମନ୍ତ୍ର ପାରିବକି ଆଣି ଜାଗ୍ରତ ସଂହତି ??
ଜଳୁଛି ଯେଉଁଠାଏଁ ସ୍ୱାର୍ଥର ଭୂମି ଈର୍ଷ୍ୟା
ସୁବାସ ସିମିଙ୍ଗ୍, ଭ୍ରାନ୍ତ ନିଓ୍ୟାଲେ ଟେଲି ଆଜି ଯେତେ ଗୃହେ
ବର୍ଚ୍ଛି ନାଚା ପାଲି, ସବୁଠି ତୁମରି ସୃଷ୍ଟି
ପ୍ରତାରଣା ଆଜି ସାର

ଅବିଶ୍ୱାସର ଦାରୁଣ ଆଘାତେ ଭାଜି ଭାଜି ଯାଏ
ସ୍ନେହ-ପ୍ରତ୍ୟୟର କୋଣାରକ ସବୁ
ଘୋଟିଆସେ ଅନ୍ଧକାର ॥



# ଲୋହିତ ମାଟିର କାହିଁ

● ବଂଶୀଧର ଦାଶ

ତୁମେ କଣ ଭାବୁଛ ସମ୍ରାଟ୍ -
ତୁମେ ଏକା ବଞ୍ଚିଯିବ,
ପରିକଳ୍ପିତ ତୁମ ତାରକା ଯୁଦ୍ଧର ମୃତ୍ୟୁର ବଳୟ ଭିତରୁ ?
ପୃଥିବୀର ହୃତ୍‌ପିଣ୍ଡକୁ ନିମିଷେକେ ସ୍ତବ୍ଧ କରି
ତୁମେ ଏକା ବଂଶ ରକ୍ଷିଯିବ ?
ତୁମେ ଯଦି ବୁଝନ୍ତ ଥରେ ଇତିହାସର ଜ୍ୱଳନ୍ତ ସତ୍ୟକୁ,
ଥରେ ଯଦି ବୁଝନ୍ତ ତା'ର ଶବ୍ଦପୁଞ୍ଜ ଖାଲି ଅକ୍ଷରର ସମଷ୍ଟି ନୁହେଁ,
ବୋମା ଦଗ୍‌ଧା ହିରୋସିମାର ଅବିଶ୍ରାନ୍ତ ଆଖିଲୁହ
ଲବଣାକ୍ତ ସମୁଦ୍ରର ଜଳ ନୁହେଁ
ଓ ତା' ଗ୍ରନ୍ଥରୁ ଛିଟିକି ଉଠିଥିବା ଉଷ୍ମ ରକ୍ତ ଅଳତାର ରଙ୍ଗ ନୁହେଁ ?

ଯଦି ଥରେ ବୁଝନ୍ତ
ନୂଆ ଏକ ସୃଷ୍ଟି ପାଇଁ
କୌଣ୍ଟ ଦମ୍ପତିର ଅକୁହା ଆନନ୍ଦ

ସୂର୍ଯ୍ୟାଲୋକରେ ଝିଲ୍‌ମିଲ୍ କରୁଥିବା
ଫେନ୍ଥା, ଫେନ୍ଥା ଶସ୍ୟର ଝହ ଝିଅ ହସ
ଓ ସବୁଜ ପତ୍ରରେ ଝୁଲି, ଝୁଲି
ଗୀତ ଗାଉଥିବା ବୁଲ୍‌ବୁଲ୍ ଆଖିର ଲୋହିତ ସ୍ୱପ୍ନକୁ ?

ବୁଝିଲ ନାହିଁ ଜ'ର୍, ହିଟଲର୍
ଓ ପେ ଷ, ପୋଷ ମଣିଷ ରକ୍ତରେ
ପିଏମଡ଼ ଗଢ଼ୁଥିଲ ପରାଙ୍ଗ ଶୋଣିତର ଦଳ ।
ନଜର ସ୍ଥଳକୁ ଦେଖି ଯୁଦ୍ଧର ହୁଂକାର ତୋଳି
ଗଭୀର ଅନ୍ଧ କୂପକୁ ଲମ୍ଫ ଦେଲପରି—
ସ୍ୱାର୍ଥାନ୍ଧ ଜାନୁୟାରମାନେ କପଟ ବୁଝନ୍ତେ
ନିଜେ ହିଁ ନିଜର ମୃତ୍ୟୁର କାରଣ ବୋଲି ?

ହେ ଉଲଙ୍ଗ ସମ୍ରାଟ୍
ଆଜ ଏକ ବୋମାଦଗ୍ଧା ହିରୋସିମା ନୁହେଁ,
ପୃଥିବୀର ଆଜ ବୃହତ୍ତମ ଦୁଃଖଟିଏ ନୁହେଁ
ତୁମ ପରସିଂ, କ୍ରୁଇଜ ଓ କ୍ଷେପଣାସ୍ତ୍ରର ଘନ ଗର୍ଜନରେ
ପୃଥିବୀକୁ ଛିନ୍, ଭିନ୍ କର
ସଭ୍ୟତାର କବର ଖୋଳନା କେବେ
ମୃତ୍ୟୁର ବାରୁଦ ଝଂକାରେ ॥

ହେ ଚଣ୍ଡୀ
ଓହ୍ଲାଇଆସ ପୃଥିବୀର ସବୁଜ ମାଟିକୁ ।
ସୀମାହୀନ ଶାନ୍ତିର ଦୁର୍ବାର ସ୍ରୋତରେ
ସାମିଲ ହୋଇଯାଅ ।
ସାମିଲ୍ ହୋଇଯାଅ ॥

ନଚେତ୍ ବନ୍ଧୁ ବନ୍ଧୁ ଦେଶପ୍ରୀତି
ଏକ ଉତ୍ତାଳ ସମୁଦ୍ର ହୋଇ
ତୁମକୁ ହୁଏତ ନିଶ୍ଚିହ୍ନ କରିଦେବ
ଆଗାମୀ ସକାଳର ପୃଥିବୀର ପୃଷ୍ଠରୁ ॥



# ଶାନ୍ତି କପୋତ

❁ ଶ୍ରୀ ରାମଚନ୍ଦ୍ର ପାକଳ

କ୍ଳାନ୍ତ ଶ୍ରାନ୍ତ ଶାନ୍ତିର କପୋତ
ଶୋଇଛି ପଡ଼ିଛି
ଶାନ୍ତି ବନର ନାଲ ଗୋଲାପ ଶେଯରେ,
ଶାନ୍ତି ଆଜ ରକ୍ତ ରଞ୍ଜିତ ହିମ୍ବେଶୀମା—
ନାଗାସାକିର ନାଲ ରକ୍ତରେ ।
ଶାନ୍ତି କପୋତର ଡେଣା କ୍ଷତ ଓ ବିକ୍ଷତ ରକ୍ତେ ଭିଜ ଭିଜ,
ଶାନ୍ତି କପୋତ ଦାଗଦାଗ ଆଜ—
ଭିଏତ୍‌ନାମ୍‌, କୋରିଆର ନାଲ ଆକାଶରେ ।
ଆଜ ସେଠିବି ଶୁଭୁଛି ଅଶାନ୍ତ ଆତ୍ମାର—
ଆର୍ତ୍ତ ଚିତ୍କାର ଧୂଳି, ମାଟି ଓ ରକ୍ତ କଣିକାରେ ।
ନରହନ୍ତାର ରକ୍ତଭିଜା ନାଲ ହାତ ଧୂଆହେବ
ପୁଣ୍ୟ ତୋୟା ଗଙ୍ଗାର ପୂତ୍ୟ ଉଦକରେ
ଶାନ୍ତି ଉଠିବ ଜାଗି ରାଜଘାଟର ମାର୍ବଲ ଚଟାଣରୁ
ପ୍ରସାରିତ କରି କାଯ୍ୟା ବାଗ ବନ୍ଧଗରେ
ବିଶ୍ୱର କୋଣ ଅନୁକୋଣେ—
ଗୁଞ୍ଜରି ଉଠିବ ତାର ମୋହନ ମୁରଲୀ ସ୍ୱନ
ପୁଣି ଶାନ୍ତିର ସାହାନାଇ ।
ପରମାଣୁର କଳାଗୁଳ ଧୁଁଆଁ ଭୁସିବ
ନଭ୍ରେ, ପୃଥିବୀ. ଆକାଶେଁ
ଶାନ୍ତିର ରୂପଲି ଜହ୍ନ ଝଲସାଇ ଦେବ
ସମଗ୍ର ମାନବ ଓ ପ୍ରକୃତି
ଶାନ୍ତି କପୋତ ନବଜନ୍ମ ଲଭି ଉଡ଼ି ବୁଲିବ
ଶାନ୍ତି ବନର ରକ୍ତ ଗୋଲାପର କୋମଳ ଶେଯ ଛାଡ଼ି
ଶୂନ୍ୟରୁ ଶୂନ୍ୟକୁ ମହାକାଶର ସୀମା ସରହଦ ଡେଇଁ ।



# ଆଶ୍ଚର୍ଯ୍ୟ କାଳ୍ପ ସତ୍ୟ

❁ କୃଷ୍ଣଚନ୍ଦ୍ର ପଟେଲ

ମୁଁ କବି ନୁହେଁ, ଜବରଦସ୍ତ ବନୁଛି ମୁଁ,
ସମାଜ ବାଧ କରୁଛି; ଦୁର୍ବୋଧ
କବିତା ଗୁଡ଼—ଲେଖ୍ କବି,
କ୍ଷେତର ହଳିଆ, ମୂଲିଆ, ହୋଟେଲର
ପ୍ଲେଟଧୂଆ, ଆଜ ସିନେମା ହଲର,
ଗେଟକିପର ଠାରୁ ବୁଝି ଗାଉ --
ଗାଉ ତୋ ଜୟଗାନ—'ଜୟ ଜବାନ୍ ଜୟ କିଷାନ୍ ।

ମୁଁ ଲେଖକ ନୁହେଁ । ଜବରଦସ୍ତ ବନୁଛି ମୁଁ,
ଗାଳ୍ପିକ ଆଉ ଡ୍ରାମାଟିଷ୍ଟ,
ଅସଂଖ୍ୟ ଗାର ଟାଣି ଦେଇ ତାରେ
କହିବ କି, ଏହା ଏକ ନୂତନ କଳା ?
ଦେଖି ନ ଦେଖିଲା ପରି,
ବୁଝି ନ ବୁଝିଲା ପରି—ମୁଣ୍ଡଟି ହଲାଇ,
ଅଙ୍ଗଭଙ୍ଗୀ କରୁଥିବ, ବାସ୍ତବ ଜୀବନ—
ହଗ ଫିଲ୍ମ ତାଇକାର ଭଳି ?

ମୁଁ କଳାବଜାରୀ ନୁହେଁ, ଜବରଦସ୍ତ ବନୁଛି ମୁଁ,
ଜିନିଷ ଭେଜାଲ କରି, ଦଣ୍ଡି ମାରୁଥିବ,
ଟଙ୍କାକୁ ହଲାଇ ହଲାଇ, ପକେଟ ଭର୍ତ୍ତିକରେ,
ଠିକାଦାର, ଖଣି ମାଲିକ, କାରଖାନା ମାଲିକ,
ବ୍ୟବସାୟୀ, କଳାବଜାରୀ,
ଆଉ ଲାଞ୍ଚଖିଆ ଅଫିସରଙ୍କ ଉଦରେ ।

ମୁଁ ନେତା ନୁହେଁ । ବନୌଷି ନେତା ମୁଁ ?
କୃତ୍ରିମ ଶାସନେ ଖଳ କରେ ହୁଏ,
'ହାଇକମାଣ୍ଡ' ତିଆରି କରି ଗୁଡ଼ିଏ
ପେଲିଦିଏ, ଠେଲିଦିଏ କେଉଁଠି
ଭାରତର ଧର୍ମ ନିରପେକ୍ଷ, ସମାଜବାଦୀ
ନାମେ—ଆଦିବାସୀ, ହରିଜନ, ଗିରିଜନ,
ଧର୍ମ, ଜାତି ଆଉ ଭାଷାଭିତ୍ତିକ ରାଜ୍ୟରେ ।
ମୁଁହ ବଳ, ହାତ ଟେକ, ନିର୍ବିକାରେ,
ହାଡ଼, ମାଂସ ଆଉ ରକ୍ତ ବାଣ୍ଟିଦିଏ
'ଜାତୀୟ ସଂହତି' ନାମରେ ।

ମୁଁ ଶିକ୍ଷକ ନୁହେଁ । ନଂପୁସକ କି ମୁଁ ?
ପ୍ରତିଜ୍ଞା କରୁଛି ମୁହିଁ—ଯଦି ନ କରିବ
ପ୍ରତିକାରେ ତା'ର, 'କୃତ୍ରିମ ଶାସନେ' ଆଜି
ଜଗତ ଅନ୍ଧାର, ଖାଦ୍ୟ ନାମେ ବନ୍ଦୀ
କରେ—ଆତ୍ମ ହତ୍ୟାର ମାରଣାସ୍ତ୍ର
ଯେତେ—ନିଶ୍ଚିହ୍ନ ହେବ କି ଧରାପୃଷ୍ଠୁ
ମାନବ ସଭ୍ୟତା, କୂଟକପଟେ ମାତି ବଳେ ?

"ଶିଶୁ କାନ୍ଦେ, କାନ୍ଦି ହାତ ପତାଇ
ମାଗେ ତୋ'ର ଭିକ୍ଷା—ଶିଶୁ ଶିଶୁ
ମଧ୍ୟେ ନ କରି ଭେଦ—
ଦିଅ ବାରେ ସମାନ ଶିକ୍ଷା—
ଦିଅ ହେ—ଗୁରୁକୁଳ ମତେ
"ଶାନ୍ତି" ରୂପକ ମୁଠାଏ ଭିକ୍ଷା" ।



# ଅନ୍ଧାର ବନାମ ଆଲୋକ

● ବିଭୂତି ଭୂଷଣ ସେନାପତି

ଆଗାମୀ ମୁହୂର୍ତ୍ତ ସବୁ
ନିଜ ପାଇଁ ରଖିବାର ପ୍ରବଣତା ନେଇ
ଯେଉଁମାନେ ପ୍ରତିଦିନ
ନିଜ ଆୟୁଷରୁ ଦିନଟିଏ କଟିଗଲା ବୋଲି
ଦୁଃଖ କରନ୍ତି,

ଜୀବନ ତୃଷାପାଇଁ
ସାଗରରୁ ସ୍ୱର୍ଗ ଯାଏ
ବାନ୍ଧିବାର ମନ୍ତ୍ର ସାଉଁଟନ୍ତି (୧)

ସେହି ସ୍ୱାର୍ଥ କାପୁରୁଷମାନେ,
ଏ ମାଟିର ସର୍ବମୟ କର୍ତ୍ତାଭାବେ
ସଭିଙ୍କର ମୃତ୍ୟୁ ପରୱାନା ପରେ
ନାମାଙ୍କିତ ମୋହର ଲଗାନ୍ତି ।

ଅସହାୟ ଶୃଙ୍ଖଳିତ ପଶୁର କ୍ରନ୍ଦନ ସ୍ୱର
ଲୁଚିବାକୁ ଡାକବାଜ ଯନ୍ତ୍ର ସାହାଯ୍ୟରେ
ସଙ୍ଗୀତ ଶୁଣାନ୍ତି ॥

ହାୟ ! ନିର୍ବୋଧ, ବର୍ତ୍ତମାନ ସର୍ବସ୍ୱମାନେ
ଧ୍ୱଂସ-ବେଦର ମନ୍ତ୍ରଦ୍ରଷ୍ଟାମାନେ ।
ଏଇ ଦେଖ—ମାଟିର ବନ୍ଧନ ଆହୁରି ଦୃଢ଼ ହୁଏ

ଏଇ ଶୁଣ—ପବନର ସ୍ୱର ସ୍ପଷ୍ଟ ହୁଏ
ବାନ୍ଧିବାର ଦାବୀ ଆହୁରି ତୀବ୍ର ହୁଏ ।



# ସମୁଦ୍ରର ସ୍ୱର

● ଉମାକାନ୍ତ ମିଶ୍ର

ଅଂଧାରରୁ ଆଲୋକକୁ ଉତ୍ତରଣ ପରେ
କେହି କେବେ ଇଚ୍ଛାକରେ ପୁଣିଥରେ
ଅଂଧାରରେ ବାଟ ଖୋଜିବାକୁ ?

ଅଗ୍ନିର ସର୍ବଗ୍ରାସୀ ବଳୟ ଭିତରେ
ଏ ସୃଷ୍ଟିର ଧ୍ୱଂସ ଦେଖିବାକୁ ?

କେହି କ'ଣ ଇଚ୍ଛାକରେ ଯିବାପାଇଁ
ଚୁପ୍‌ଚାପ କାକୁସ୍ଥ ପକ୍ଷୀଙ୍କ ପର ବସିଥିବା
ବିଗଳଳିଯ ଅାଭିପଟେ ଧ୍ୱଂସ ସହରକୁ
ସ୍ତୁପୀକୃତ ବରଫର ଶବ୍ଦହୀନ ବିବର୍ଣ୍ଣ ମାଟିକୁ ?

ତଥାପି ଅଶରୀର ଅହଙ୍କାର ବ୍ୟର୍ଥ ଆସ୍ଫାଳନ
ସ୍ୱାର୍ଥାନ୍ୱେଷୀ ହାତମୁଠା ତଳେ
ଖିନ୍ନବସ୍ତ୍ର ନିସ୍ପ୍ରହ ଆଖିରେ
ପ୍ରଶ୍ନବାଚୀ ବନ୍ଧୁ ଆଶଙ୍କାର
କଜ୍ଜଳ ମୃତ୍ୟୁ ଛାୟ ଅସ୍ପଷ୍ଟ ଧୂସର ।

ତଥାପି ବି ଇଗଲର ଡେଣାତଳେ
ମୁଠା ମୁଠା ଅଂଧାରର ସ୍ୱପ୍ନ
ମୁମୂର୍ଷୁ ମଣିଷର ଯନ୍ତ୍ରଣା ଭିତରେ
ହଜିଯାଏ ସକାଳର ସୁରଭିତ ଲଗ୍ନ ।

ପକ୍ଷାଘାତ ଦେହ ଆଉ ରୁଗ୍‌ଣ ମନତଳେ
ସଭ୍ୟତାର କଫିନ୍ ତିଆରି ପାଇଁ
ଅନେକ ଦୁଃସ୍ୱପ୍ନ ।

ନିରଳସ, ଛନ୍ଦମୟ ଜୀବନର ସୁର
ଜାତିବନ୍ଧୁ ସହୋଦର ପ୍ରିୟ ପରିବାର
ପ୍ରସାରିତ ହସ୍ତସବୁ କରି ଏକାକାର
ଗଢ଼ିହେବ ନଭଶ୍ଚୁମ୍ବୀ ଜୀବନର କୁତବମିନାର ।

ତାହାହିଁ ତ ଏକମାତ୍ର ସତ୍ୟ
ଜୀବନ ନଥିରେ କାହିଁ ସଭ୍ୟତାର ଚହ୍ନ
ମଣିଷ ଆକାଂକ୍ଷିତ ନୂତନ ସୃଷ୍ଟିର ନକ୍ସା
ଗତିଶୀଳ ସମୟର ଲୁକ୍‌କାୟିତ ଅନେକ ବୈଚିତ୍ର୍ୟ ।

ସତକୁହ ବନ୍ଧୁ !
କେହି କ'ଣ କେବେ ଗୁହେଁ
ନିଜ ହାତେ ଆଗାମୀର ତଣ୍ଟିଚିପି
ନିରର୍ଥକ ଉନ୍ମତ୍ତ କାମନା ନେଇ
ଖୋଜିବାକୁ ମିଛଟାରେ
ବଞ୍ଚିବାକୁ ଯୁଗ ଯୁଗ ନିଜ ପରିଧିର ସମସ୍ତ ଗ୍ଲାନିରେ ?

ତେଣୁ ମୁଁ ଡାକୁଚି ଆସ
ଟାଣି ନେଇଯିବା ଆମେ
ଶତଥର ମୀଳ ନନ୍ଦଘୋଷ
ଏ ପୃଥିବୀକୁ ଆଜିପରି
ଆଗାମୀ କାଲିକୁ ସାଇତି ରଖିବା
ଆମେ ସବୁ ଭାଇବନ୍ଧୁ ସାଥି
ମିଳିମିଶି ଜୀବନ ଖୋଜିବା ।

ଶାନ୍ତି, ମୈତ୍ରୀ, ପ୍ରୀତିର ପୃଥିବୀ
ସୀମାହୀନ ସମସ୍ତ ପଥରେ
ବଞ୍ଚିବାକୁ ସ୍ୱାକ୍ଷର କରିବା ।



# ଭାରତ ବର୍ଷ

● ଜୟପ୍ରକାଶ ମାହନ୍ତ

ଭାରତ ବର୍ଷ ।
ଏଇ ଆମ ହିନ୍ଦୁସ୍ଥାନ, ସୁନାର ଭାରତ,
ଏ ଦେଶର କଳାକୀର୍ତ୍ତି ଗାରିମା ଗୌରବ
ଆଜ ସ୍ୱପ୍ନ, ଦୂରପରାହତ ।

ପୁରୀ ଓ କୋଣାର୍କର ଅନେକ ମୂର୍ତ୍ତି ଚୋରିଯାଏ ।
ପ୍ରଭୂତ ଅର୍ଥର ଲୋଭ
ପୁଞ୍ଜିବାଦୀ ବ୍ୟବସ୍ଥାର କ୍ରମ ପରିଣତି
ମଣିଷକୁ ରାକ୍ଷସ ସଜାଏ ।

ସ୍ୱାଧୀନ ଭାରତ ବର୍ଷ ।
ମଣିଷ ଏଠାରେ ପାଲଟି ଯାଏ
ହିଂସ୍ର, ଭୟାନକ
ସ୍ୱାଧୀନତା, ପରାଧୀନତା ଧରି କରି ଚାଲେ
ରକ୍ତପାତ, ଯୁଦ୍ଧ ଏବଂ ଯାବତୀୟ ବ୍ୟଭିଚାର;
ଶୁଣେନା ସେ ସଂହତିର କରୁଣ ଚିତ୍କାର ।

ଜୀବନର ନବପତ୍ର, ଆଗାମୀର ସ୍ୱପ୍ନ
ସବୁ ତ ସପନ;
ଯନ୍ତ୍ରଣାରେ ଜଳି ଉଠେ
ଗାଁ ଓ ସହର ।

ଖଲିସ୍ତାନ, ଗୋର୍ଖାଲ୍ୟାଣ୍ଡ
ସଂଘର୍ଷର ମୂଳ ସୂତ୍ରଧର ।
ନିରୀହ ଏ ଜନତା ଓ ବୁଦ୍ଧିଜୀବୀ ଦଳ
ଅକାରଣେ ସନ୍ତ୍ରାସବାଦୀଙ୍କ ଦୁଷ୍ଚକ୍ର ଶିକାର ।

ଆସ ବନ୍ଧୁ !
କୃଷକ, ଶ୍ରମିକ ଓ ଶିକ୍ଷକ
ଏଇ ଦେଖ ଭାଙ୍ଗି ପଡ଼େ
ହତ୍ୟାକାଶ ହସ୍ତିନାର
ପଥର ପ୍ରାଚୀର ।
ଆସ ସବୁ ମିଳିମିଶି
ଗଢ଼ିଯିବା ଭାରତର
ଗାଁ ଓ ସହର ॥



## ଦହନ : ଏକ ଆହତ ପୌରୁଷର

● ନିରଞ୍ଜନନ ସାହୁ

ଶିକ୍ଷକ ସେ ଯେ ଶିକ୍ଷକ—
ଦୂର କରେ ଯିଏ ଅସୀମ ପ୍ରାଣର, ଅପୂତ ଯୁଗର ବ୍ୟଥା,
ଅନ୍ଧକାରର ଶୃଙ୍ଖଳ ଖୋଲି—
ଜଗତକୁ ଯିଏ ଭେଟିଦିଏ ଆଣି ନୂତନ ଆଲୋକ ଶିଖା ।
ଶାନ୍ତି, ସହତ, ମୈତ୍ରୀ, ପ୍ରୀତି ଅନ୍ତରେ ଯାର ଭରା,
ତାକୁ କ ପାରିବ ଜିଣି—
ସ୍ୱାର୍ଥାନ୍ଧ କୃତ୍ରିମ କାବ୍ର ଅବା ଅଜ୍ଞାନତାର ଜରା ?
ଭଣ୍ଡ ସାଧକ ସଜାଡ଼ୁଛୁ ବେଦୀ ଯଜ୍ଞର ଆୟୋଜନେ । ୨ ।

ଦିବସର ଅଂଚଳେ—
ସନ୍ଧ୍ୟାପୂଜା ଯେ କରୁଥାଏ ଅନୁକ୍ଷଣେ ।
ଆରେରେ ପାଗଳ ! ହସ ଲାଗେ ଜାଣି, ତୋର ଏ ପ୍ରଗଲ୍‌ଭତା ।
ତୁ କ ପାରିବୁ ଏ ଜାତିକୁ ଦୁର୍ବଳ କରି
ପାରୁଛ ଦୁର୍ବଳ କରି;

ମେରୁଦଣ୍ଡ ଯା'ର ସ୍ୱର୍ଗ ଗାଇନାହିଁ—
ରଣ ଦୁର୍ମଦ ଆଲେକ୍‌ଜାଣ୍ଡାର ସାର ।
ଗୃହହୀରେ ଜଗଇ ଗୃହ—
ହାତେ ଗଢ଼ା ଯା'ର ମଣିଷ ସମାଜ/କିଏ ଆଜ ତା'ର ସାହା ?
ଦୁଃଖ, ଯନ୍ତ୍ରଣାର ସାହାରା ବୁକୁରେ,
ପ୍ରବଞ୍ଚନାର ଦରିଆ ମଝିରେ
କିଏ ବା ଅଛି ତା', ଦୁଃଖରେ କହିବ ଆହା ?
ଫେରିଆସ ଆହେ ଏ ଜାତି ଜନକ,
ଦେଖିଯାଅ ତୁମ ହାତଗଢ଼ା ପରିବାର;
ଶିକ୍ଷକ ଏଠି ଦରମା ପାଏନା—ମାସ ମାସକର ମେହେନତ୍ ପରେ ତାର ।
ବଢ଼ିଲା ଝିଅ ତା' ଘରେ ରହିଯାଏ—
ଢାଳ ଢାଳ ଆଖି ଲୁହ;
ଭବିଷ୍ୟତର ତା ସନ୍ଧ୍ୟା ତାରା ଯେ ପୁଅ—
ଇଣ୍ଟରଭ୍ୟୁ ଦେବାକୁ ପଇସା ପାଏନା, କାହାକୁ କହିବ କୁହ ?
ଜୀବନ ବିହୀନ ଜୀବନ ଧରି—
ତଥାପି ସେ ଆଜ ରଣଦୁର୍ମଦ, ଅଜେୟ ବିପ୍ଳବୀ ବୀର ।
ପଣ କରିଛି ସେ, ଏ ସମାଜ ପକ୍ଷେ, ଖଞ୍ଜିଦେବ ନୂଆ ପର ।
ଆସ କମ୍‌ରେଡ୍ ଆସ,
ଲହୁ ଲୁହ ଦେଇ ଗଢ଼ିଦେବା ଆମେ, ସମାଜ ଅତୁଳ ତୁଳ ।
ସ୍ନେହ ପାରାବାରେ ବୁଡ଼ ପକାଇ/ମମତା ବନ୍ଧନ ହୃଦୟେ ଧରି,
ପ୍ରୀତିର ଅଞ୍ଚଳ ଟାଣି—
ବହ୍ନି ମଶାଲ ହାତରେ ଧରି,
ଦେଶ ଓ ଜାତିର ଉନ୍ନତି ପଥେ/ଶିକ୍ଷା, ଶିକ୍ଷକ, ଶିକ୍ଷାର୍ଥୀ ପାଇଁ
ନୂଆ ଜୀବନର, ନୂଆ ସମାଜର, ସଂଦେଶ ଦେବା ଆଣି ।



# ମୁହିଁ ଓସ୍ତା

● ରମାକାନ୍ତ ମହାନ୍ତି

ମୁହିଁ ଓସ୍ତା—
ସାରା ଓଡ଼ିଶାରେ ମାଧ୍ୟମିକ ଗୁରୁ ସଂସ୍ଥା,
ମୁଁ ଶିକ୍ଷା-ଆନ୍ଦୋଳନ ସ୍ରଷ୍ଟା
ମୁହିଁ ଓସ୍ତା ।

ଉତ୍କଳର ପ୍ରାଣ କେନ୍ଦ୍ର, କଟକେ, ନୟାସଡ଼କରେ
ମୋହର ବାସ
ରାଜଧାନୀ ମୋଠେ ଅଳପ କୋଶ ।

ବୟସ ମୋହର ହେଲା ଗୃଳଶ
ଅର୍ଦ୍ଧ ଶତକକୁ ମାତ୍ର ଦଅଶ ।
ଓଡ଼ିଶା ରାଜ୍ୟର ଶିଶୁଙ୍କ ମୁହଁରେ ଫୁଟାଏ ହସ
ସରକାରଙ୍କର ହୃଦୟ ମଧ୍ୟରେ
ସୃଜେ ମୁଁ ତ୍ରାସ ।

ମୁଁ ଯେ ଐକ୍ୟର ଶକ୍ତି ଉତ୍ସ
ମହାସଂଘର ଅଂଶ
ତେରଟି ଜିଲ୍ଲାରେ ଶାଖା ସଂଗଠନ
ଅଞ୍ଚଳ ଅଞ୍ଚଳ ଯେଉଁଠି ଖୋଜିବ
ତୁମେ ତ ପାଇବ ତାର ସନ୍ଧାନ ।

ଶିକ୍ଷାର ଉନ୍ନତି ଜାତୀୟ ବିକାଶ,
ମୋହର ଧର୍ମ
ଶିକ୍ଷକ ମଙ୍ଗଳ, ଛାତ୍ରର ଉନ୍ନତି
ମୋହର କର୍ମ ।

ସେଥିପାଇଁ ସିନା ଶିକ୍ଷକ ଦାବୀ ଜାତିର ଦାବୀ
ରାଜଧାନୀର ରାଜରାସ୍ତାରେ ଉଠେ ଗରଜି
ତଥାପି ଶାସକେ ନୁହନ୍ତି ରାଜି ।

ଏ ଦେଶ ଶିକ୍ଷକ କୁଳ,
ରକତ ଅଜାଡ଼ି ହୁଏ ଆକୁଳ
ଗ୍ରାମ ଶିକ୍ଷକ ଶ୍ରମିକ ମିଶି
ଏକତାର ଏକ ମଞ୍ଚ ପ୍ରକାଶି
ଲକ୍ଷେ ସମାବେଶେ ଯାଆନ୍ତି ମିଶି ।

ଗଣତନ୍ତ୍ର ବାନା-ଧାରୀ
ହୁକୁମନାମାଟି କରନ୍ତି ଜାରି
ବଡ଼ ପୁଲିସିଙ୍କ ଆଦେଶ ବଳରେ
ଓ. ଏମ୍. ପି. ଜବାନେ ପକାନ୍ତି ହୁରି ।

ପିଠ ଏମାନଙ୍କୁ ପିଠରେ ପିଠ
ମୁଣ୍ଡ ଫଟାଇଣ ଭାଙ୍ଗରେ ମେଣ୍ଟ
ଦୃଢ଼ ଶାସନର ଶୋଷଣ ଆଣ୍ଠ ।

ଦାବୀ ନ ମାନଲେ ନଆଁ ଜଳିବରେ
ନଆଁ ଜଳିବ
ହୁଙ୍କାର ରଢ଼ି ଶୁଭେ ଶବଦ
ଗ୍ରୁନଆ ଖାବ
ଏତେବେଳେ ଚେତା ଫେରେ ତାଙ୍କର
ଆଲୋଚନା ବାଟେ ସବୁ ହୋଇବ ।

ମୁଖ୍ୟ କଥା ସବୁ କରଣ ଦେବୁ
ଏକାଠି ହୋଇକ ନ ଆସ ବାବୁ
ପଞ୍ଚନଧି ସଙ୍ଗେ ଭେଟ ହୋଇବୁ ।

ଏଭବେ ସଂଗ୍ରାମ ସ୍ଥଳଇ ମୋର
ସମସ୍ତ ଜଡ଼ତା ଅନ୍ୟାୟ ଯେତେ
ହୁଅଇ ଦୂର
ତଥାପି ଅପେକ୍ଷା କରରେ କଭ ।
ମିଳିଯିବ ସବୁ ଧୈର୍ଯ୍ୟ ଧର ।

କେତେ ମୌଳିକ କଥା
ହାସଲ ହୋଇଛି, ଯାଇଛି ବ୍ୟଥା
ଆହୁରି ଅନେକ ରାସ୍ତା
ଯୁମରଲେ ପୁଣି ଘୁରଇ ମଥା ।

ମାନବ ସମ୍ବଳ ବିକାଶ ନାମେ
ଦେଶ ବିକାଶକୁ ମରାଇ ଜାଣେ
ପୁଂଜିର ସ୍ୱାର୍ଥ ରକ୍ଷା
ଏଇତ ତା'ର ଦୀକ୍ଷା
ନମାନେ ମୁଁ ଏଇ କଥା
ସଂଗ୍ରାମେ ମୋର ନିଷ୍ଠା
ମୋର ନାମ ଅଟେ ଓଷ୍ଟା
ମୁଁ ଯେ ଗୁରୁ ଆନ୍ଦୋଳନ ସ୍ରଷ୍ଟା ।

ମୋ ମନ କଥାଟି ଶେଷରେ
କହିଦିଏ ତୁମ କାନରେ
ସାମ୍ରାଜ୍ୟବାଦୀଙ୍କ ଚକ୍ରାନ୍ତ ଫଳେ
ଘରଆଡ଼େ ଆଜ ଜଳୁଛି ନିଆଁ
ଶାନ୍ତି ନାମରେ ଶାନ୍ତ କବର, ଖୋଳିଯାଏ ଯିଏ
ଗୋଟା ଦୁନିଆ
ଶାନ୍ତିର ସ୍ଲୋଗାନ ଉଦ୍ଧେ ତୁ ତୋଳି
କରିଦେ ଭଲ ତାଙ୍କୁ ଗୁନିଆଁ ।



# ସଂଘାତ୍

● ମାୟାଧର ମାଝୀ

ଝଞ୍ଜା ଆସେ
ଆସିଥିଲା ଝଞ୍ଜା
ସାବଧାନ । ହୁସିଆର ହୁଅ ସାବଧାନ,
କହେ ଅବଧାନ ।

ଜୀବନର ଝଞ୍ଜା
ସେ ଝଞ୍ଜା ବୈଶାଖିର କାଳ ବୈଶାଖିର
ତୃଷାର୍ତ୍ତ ଶୁଖିଲା ତଣ୍ଡିର ।
ଖାଲି ଠୋପାଏ ପାଣି କରୁଣାର ଆର୍ତ୍ତନାଦ—
ଅନେକ ଅନ୍ଧାରୁଆ ଚତ୍ରକାରମାନଙ୍କ
ଅକ୍ଲାନ୍ତ ଶ୍ରମର ମାଟି ଖୋଳା
ଝୋଲନାଳ
ପଥିକ ଶ୍ରାନ୍ତ କଣ୍ଠନୁହେଁ
ଝିଲମିଲ ମରିଚିକା ସାର । ୧ ।

ଧେଣ୍ଡୀ କୁଞ୍ଜ ଛା’ ପନ୍ହାରୁ
ନଗାଡ଼ ଝଙ୍ଗିରଲା· ·..........
କିନ୍ତୁ ଯଦ
ଏ ମଣିଷ ନଜାଣିଲା ନଶିଖିଲା ମନରୁ ପୋଛିଦେଲା
‘ନାଗାଶାକ’ ‘ହ୍ୱିଗେସିମା’ ଲୁହ ଓ ଲହୁକୁ ।
ଉଠ ଉଠ ଆରେ ହତଭାଗା ସଂଖ୍ୟାହୀନ ଏକଲବ୍ୟମାନେ

କାଟନ ତୁମ ଅଙ୍ଗୁଳି
ଯାଗି ଉଠି ଶୁର ଚୋଳଧର
ଦ୍ରୋଣାଚାର୍ଯ୍ୟଙ୍କ କୁହୁଡ଼ି ଘର୍ଷଣରେ ।
ଶାଗୁଣା, ବଲୁଆ ଶକାଳ୍କ ହେଲେ
ଶିକ୍ଷା କଥା ଭାବିବାକୁ ବେଳ କାହିଁ ତାକୁ ? । ୨ ।

ପୁରୁଣା ଫୁଟୁଣା ହେଲା
ସଂସ୍କୃତ ବିକୃତ
ଶ୍ରେଣୀହୀନ ସମାଜ ଗଢ଼ିବାର ଢଙ୍ଗୁଣ ପିଠାରେ
ଥାଏବ ମାନେ
ଇଜ୍ଜତ ଢାଙ୍କିବାକୁ ନାହିଁ ଖଣ୍ଡେ ଚାଳପଡା ଲୁଗା
ଅଥଚ ଥୋକାଏ ଗଢ଼ିବେ ଦେଶ
'ନବଦ୍ୟୋଗ' ନାମେ
ହାସ୍ଯରେ ହତଭଗା ଦେଶ
ଓ କନ୍ଦୁ ବରଂର ଚତ୍କାର କୁହ ଠ । ୩ ।



# ଆବେଗ—ଏକ ବଞ୍ଚିତ ପ୍ରାଣର

● ସାରଙ୍ଗଧର ମିଶ୍ର

ହେ ଶତାବ୍ଦୀ ! ଆଣିଛ କି
ଯୁଗ ଦୂତ ମହାମାନବର
ବାଣୀର ଆହ୍ୱାନ

ପଦ୍ୱେକ୍ଷେ ଯା' ଅନ୍ତରର
ନିଭୃତ କକ୍ଷେ ଶାନ୍ତି ଧନ
କରେ ପ୍ରସ୍ଥାପନ ।।

ମାଟିର ମୃତ୍ତିକା ଦେହେ
ଫଳଇ ଯେ ସୁନାର ଫସଲ
ସୂର୍ଯ୍ୟର ଶପଥ ଆଜ
ସ୍ୱର୍ଣ୍ଣ କାକଳି
ପ୍ରାଚୂର୍ଯ୍ୟର ମନ୍ଦାକିନୀ ବହେ
ଯହିଁ ସଦା ଅବିରଳ ।।

ଭ୍ରାନ୍ତ ପୂର୍ଣ୍ଣ ଅଗ୍ରଗତ
କୁସଂସ୍କାର ନାମେ ଆଡ଼ମ୍ବର
ଶୂନ୍ୟ ସରଳତା ଯହିଁ ହୋଇଛି ସମ୍ଭାର
ବିଶ୍ୱଗ୍ରାସୀ ଇନ୍ଦ୍ରଜାଲ
ତାଣ୍ଡବ ନୃତ୍ୟରେ
ପ୍ରକମ୍ପିତ ହୁଏ ପୁଣି
ନଭସ୍ଥଳ ଭେଦଇ ଆକୁଳେ ॥

ସୃଷ୍ଟି ହୋଇଯିବ ଧ୍ୱଂସ
ପରମାଣୁ ବୋମା ବିସ୍ଫୋରଣେ
ହୋଇଯିବା ସର୍ବେ ଆମେ
ବିଜ୍ଞାନ ଇନ୍ଧନ
ପଶୁପକ୍ଷୀ ପତଙ୍ଗମ ସହ
ପରମାଣୁ ଦେବ ଜାଳ ସସାଗରା ଧରାର ଅଙ୍ଗନ
ହେ ବିଜ୍ଞାନ ! ବିଶ୍ୱଧ୍ୱଂସୀ
ଅଭିଯାନ ତବ କର ପ୍ରତ୍ୟାହାର
ଯାହା ଅଟେ ଅନ୍ଧ ପ୍ରଗଲ୍‌ଭତା
ସର୍ବଂସହା ରଚଲେଣି ଏବେବି ଦୁର୍ବାର ॥

ହିଂସା, ଦ୍ୱେଷ, ଅହମିକା
ବର୍ତ୍ତ୍ତି ବଳୟରେ
ଅସ୍ପୃଶ୍ୟ ଯଜ୍ଞର ଶେଷ ହେଉ ତାରକା ସଂଗ୍ରାମେ
ବିଜ୍ଞାନ ବଢ଼ିମା ଜାଳେ, ଲୁପ୍ତ ହେଉ ଏ ମାନବ ଜାତି
ଯାହା ଅଟେ ଆମୂଲ୍ୟ ଜୀବନ
କିନ୍ତୁ,
ନର୍ଯ୍ୟାତିତ ଜଗତର
ବାଣୀ ଯେନ ହୁଅ ଅବଶୀର୍ଣ୍ଣ
କ୍ଷୁଧିତ ଏ, କ୍ଷୁବ୍ଧ ଏ, ବ୍ୟଥିତ ଏ
ଜନ୍ମଭୂମି, ବିଶ୍ୱ ଲୋଡ଼େ ଶାନ୍ତ ॥



# ହେ ଦେବତା

● ଭ୍ରମରବର ବିଶ୍ୱାଳ

ହେ ମହାତ୍ମା !
ଯେବେ ତବ ମରତନୁ
ଥାନ୍ତା ଏହି ମର ଧରାଧାମେ,
ଯେବେ ତବ ସୁଧାବାଣୀ
ମୁଖରିତ କରୁଥାନ୍ତା
ଆକୁମାରୀ ହିମାଚଳ
ଏ ଭାରତ ଭୂମେ;
ପାରନ୍ତାକି କେବେ ସହ୍ୟ କରି ?

ଏ ଦେଶର ପ୍ରତି ନଈ ନାଳେ
ବହେ ଯେଉଁ ହିଂସା, ଦ୍ୱେଷ
ଅସତ୍ୟର ପୂତିଗନ୍ଧବାରି ।

ହେ ମହାମାନବ !
କେଉଁ ଦୂରଗିରି ଖୋଲେ
ଅବା କେଉଁ ମହୋଦଧି
ଅତଳ ଗରଭେ
ଅଶରୀରୀ ଆତ୍ମା ତବ
କରିଛି ଆତ୍ମ ଗୋପନ
ଆତ୍ମ ଗଞ୍ଜରବେ;
ହୋଇକି ପାରନ୍ତା ରହିତୁନ ?
ଦେଖି ବୃଥା କ୍ଷମତାର ମୋହ
ଆତ୍ମଗର୍ବ, ଅହଂକାର
ପ୍ରିୟାପ୍ରୀତି ତୋଷଣର ଗ୍ଲାନି ।

ହେ ମହର୍ଷି !
ଆଫ୍ରିକାର କେଉଁ ବନ

କାନ୍ତାରରେ ଘୁରିବୁଲେ
ବିଭୂତି ମଣ୍ଡିତ ତବ
ପ୍ରେତାତ୍ମାର ଛବି;
ଭୁଲିକି ପାରୁନ କେବେ
ଜୁଲୁ, ବାସୁଂତାସ, ସ୍ୱାଜସିର
ଆରଣ୍ୟକ ଛବି;
ଦେଖି ନ ପାରିଲେ ସୁଦ୍ଧା
ଶୁଣିକି ପାରୁନ କେବେ
ତା ନାମରେ ଦେଇ ଦାହି
ଏ ଦେଶର ଆଧୁନିକ
ଶ୍ୱେତକାୟ ଗୋଷ୍ଠୀ;
ପ୍ରତାରଣା, ଧୂଆଁ ବାଣ-ଛଦ୍ମଗ୍ରୁପ୍ ତଳେ
କାବୁକରି ରଖି ଅଛୁ
ନିଃଶହାୟ 'ସ୍ୱଦେଶୀ 'ଜୁଲୁ'ରେ' ।
ହେ ଦେବତା ।
କୋଟି କୋଟି ଜନତାର
ଘେନ ନିବେଦନ;
ଦୀର୍ଘଦିନ ଅବକାଶ ପରେ
ଅବତରି ଆସ ଆଜି
କର ପୂତ ଏ ଭାରତ-ଧାମ ;
ବାହି ସତ୍ୟ, ଅହିଂସା ପ୍ରେମର
ପ୍ରଚଣ୍ଡ ମରୁତ,
ନିବାରିତ କର ମେଘଖଣ୍ଡ
ମୁକ୍ତିକର ସ୍ୱାଧୀନତା ରବି
ବୋହିଯାଉ ଦେଶସାରା
ସତ୍ୟ, ଶାନ୍ତି, ଦୟା, କ୍ଷମା, ଅହିଂସାର
ପ୍ରଗଲ୍‌ଭ ସହିତ ।



# କେଉଁଠି ଜାତୀୟ ସଂହତି

● ଧର୍ମାନନ୍ଦ ଚୌଧୁରୀ

ଆସୁଛି ଶୁଭ ନବବର୍ଷ
ପ୍ରତି ପ୍ରାଣେ ଜନମାଇ 'ଆଶା ଓ ଆକାଂକ୍ଷା ॥
ଚଉଦିଗେ ଦେଶେ ଦେଶେ
ଆନନ୍ଦ ପୁଲକ ଯାଏ ଖେଳି
ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷେ ।
ଘୋଷିକ ଯା ଖ୍ରୀଷ୍ଟୀୟ ଶତାବ୍ଦ । ୧ ।
ସ୍ଥିତଧୀ କହେ—'ହେ । ନବ ବରଷ' !
ହୁଅ ତୁମେ ଶୁଭଙ୍କର—
ସଭିଙ୍କଠି ବରଷୁ ଆଶିଷ ।
ଚଉଦିଗେ ବାଜଉଠୁ ଆନନ୍ଦ ଝର୍ଝର । ୨ ।
ଦୁର୍ମତିର ମନଭରେ ଧୃଷ୍ଟତା ବାସନା—
ପାଇବାକୁ ଅସାର ଆନନ୍ଦ ।
କେହୁ ଶତ୍ରୁ, କେହୁ ମିତ୍ର ନକରେ ଶୋଚନା—
ଚଳେ, ଚେଷ୍ଟେ ମାରଣ ଶୋଷଣ । ୩ ।
ଏ ସମାଜ ଆଦରୁଛି ମିଥ୍ୟା, ପ୍ରବଞ୍ଚନା,
ଏ (ମାନବ) ଜାତିର ଶାସେ ଲାଗିଅଛି କାଳକନା ।
ଏ ମଣିଷ ନୁହେଁ ଆଜ ସେହି ପୁତ୍ର-ଆର୍ଯ୍ୟ ।
କଳି କଲୁଷରେ ସମ୍ଭବଛି ଏ ସଂଘର୍ଷ । ୪ ।
ଦେଶେ ଦେଶେ ପ୍ରାନ୍ତେ ପ୍ରାନ୍ତେ ପଲ୍ଲୀ ଓ ନଗରେ—
ସଂଘଟିତ ଅନୀତି, ଅନ୍ୟାୟ
ଚୋରି, ହତ୍ୟା, ନାରୀ ଧର୍ଷଣତା ନିଶିଦିନାଂଶରେ—
ପ୍ରକାଶଇ ପ୍ରଖର ପରାଏ । ୫ ।
ପରିବାରେ, ପରିବେଶେ ନାହିଁ ଶାନ୍ତି, ନାହିଁ ସୁଖ, ନାହିଁ ପବିତ୍ରତା ।
କିପରି ବୋଲିବା ଆଜୁ ବୈକୁଣ୍ଠ ସମାନ ?
ଜର୍ଜରିତ ପିତା-ପୁତ୍ର, ପତି-ପତ୍ନୀ, ଭଗିନୀ ଓ ଭ୍ରାତା ।
ଯିଏ ସିଏ ଜପୁଛନ୍ତି ସ୍ୱୀୟ ଯୁଗଧର୍ମ । ୬ ।

ସାଧୁ, ସନ୍ଥ ବୋଲାଅନ୍ତି ବହୁଅବତାର—
ନର୍ଘୋଷନ୍ତି ଶିଷ୍ୟ ମଧ୍ୟେ ମନଗଢ଼ା ଗ୍ରନ୍ଥ ବାକ୍ୟମାନ ।
ଉଚ୍ଚରନ୍ତି ମହାବାକ୍ୟ ମନ୍ତ୍ରର ନିସ୍ତାର—
ଲଭିବାକୁ ସ୍ୱ ପ୍ରଶଂସା, ଭୋଗିବାକୁ ବହୁଧନମାନ ।୭।

ରାଜନୀତି ସାଜେ ଆଜ ଘୃଣ୍ୟ ବାଦନୀତି ।
ଛଳ୍‌ବାଜି, ଫନ୍ଦା-ଫାଶ, ମାରଣ-ଚାରଣ ।
ନେତାଙ୍କର ଏହାସବୁ ପୂଣ୍ୟ କାରସାଦି ।
ସମାଜର ଭଲମନ୍ଦ ନ ଥାଏ କାରଣ ।୮।

ହାକମ, ହୁକୁମା ଆଉ ରାଜକର୍ମଚାରୀ—
ପ୍ରବେଶିଣ କର୍ମକ୍ଷେତ୍ରେ ଯାଚନା ଉତ୍କୋଚ ।
ବଢ଼ନ୍ତି ଧୀରେ ଧୀରେ ଅତି ଘୁସଖୋରୀ—
ଚଳୁଥାନ୍ତି ଦିବାନିଶି ପରସ୍ୱ ଶୋଷଣେ ।୯।

ଧର୍ମଗୁରୁ, କର୍ମଗୁରୁ, ଓକଲ ମୁକ୍ତାର ।
ବ୍ୟାଧସମ ଖୋଜଥାନ୍ତି ସୁନ୍ଦର ମକ୍କେଲ,
ଶୋଷିବାକୁ ମହକଲ ଉତ୍ତପ୍ତ ରୁଧୀର ।
ଗଢ଼ିବାକୁ ନିଜ ପାଇଁ ରମ୍ୟ ଅଟ୍ଟାଳିକା ।୧୦।

ପୁଣ୍ୟ ଶିକ୍ଷା ନିକେତନ ତମସା ଆଚ୍ଛନ୍ନ ।
ଗୁରୁଶିଷ୍ୟ ସୁ ସଂପର୍କ ଲଭୁଛି ବିଲୟ ।
ସୁକୋମଳ ପ୍ରାଣ-ମନ ହୁଅଇ ବିଦୀର୍ଣ୍ଣ—
ଅବହେଳିକ ଶିକ୍ଷା କ୍ଷେତ୍ର ବୈମ ତୁକ ଭୟ ।୧୧।

ପୁଞ୍ଜିପତି-ଶ୍ରମଜୀବୀ ପରସ୍ପରେ କରନ୍ତି ସଂଗ୍ରାମ ।
କିଏ କରେ ଶୋଷଣ ଆଉ କିଏ ତେ କେ କରେ ଅମାନ୍ତ ।
ଧର୍ମ ଘଟେ ଆନ୍ଦୋଳନେ ହ୍ରାସ ଉତ୍ପାଦନ ।
ବିପର୍ଯ୍ୟସ୍ତ ହୁଏ ଆଜ ଜାତି-ଅର୍ଥନୀତି ।୧୨।

ଧରଣୀର ବକ୍ଷେ ଆଜ ହା ଅନ୍ଧକାର ।
ମନ୍ତ୍ରୀ, ଯନ୍ତ୍ରୀ, ତନ୍ତ୍ରୀ ନ ପାଅନ୍ତି ସମାଧାନ ।
ନିଜମନୁ ନ ଲିଭନ୍ତି ଶୋଷଣ ବିକାର ।
ଧନ୍ୟ ବିଭୁ ! ଧନ୍ୟ ତବ ସୃଷ୍ଟିର ତୋଳନ ।

ହେ ! ଶିକ୍ଷାଗୁରୁ, ଏ ସମାଜର ଦୀକ୍ଷାଗୁରୁ ।
ସଂସାର ସାଗର ମଧ୍ୟେ ଏକା ତୁମେ ଅଟ କର୍ଣ୍ଣଧାର ।
ସଂଘ- ସଂହତିରେ ଥାଇ ଏ ସଭିଙ୍କ ଜୁହାର ହେ ଗୁରୁ ।
ପୂତିଗନ୍ଧ ନରକରୁ ଏ ଜାତିକୁ କର ହେ ଉଦ୍ଧାର ।୧୪।

# ସେ ମାଟି ଓ ଏ ମାଟି

● ଗଙ୍ଗାଧର ମାଝି

ସେ ମାଟିରେ ବାଜେ କେତେ ନହବତ ସୁରସାକ୍ଷୀ ମାଦକତା ଖେଳ,
ମନଲୋଭା ଗୋଲାପ ପରଶେ ଆତୁର ଅଧର,
ଖୋଜି ବୁଲେ ହବା ଜଣି ଲୁଚ-ଆଲୁଅରେ
ଅପରୂପା ଲଳନାର ନଚ୍ଛଳ ବେଶର ।

ଏମାଟିରେ ବହିଁଶୀର ବେସୁରା ରାଗିଣୀ,
କଲ୍‌ବଲ୍ କରେ ମନ ଅଭୁଲା କାହାଣୀ,
ଖିନ୍ ଭିନ୍ କରି ତାର ଅନ୍ତରର ଅକୁହା କୁହେଳି,
ପ୍ଲାବିଯାଏ କୂଳ ଲଙ୍ଘି ଅ ାତୁର ସର । ୧ ।

ସେ ମାଟିରେ, ଝଲମିଲ ଆଲୁଅର ମନଲୋଭା ଛଇ,
ଖିଲ ଖିଲ ହାସ ସ୍ରୋତେ ମନ ଯାଏ ମୋହି,
ହାସ ଓ ଉପହାସର ଅଜବ ବେଶର,
ଲାସ୍ୟମୟୀ ମାଟିମା'ରେ କରେ ନାରଖାର ।୨।

ଏମାଟିରେ, ହକ ହକ ଆଲୁଅର ଅଲଘା କୁହେଳି
ଶାଶ୍ୱତ ଧୋଇ ଝରେ ଯୁଗ ଯୁଗ ଧରି
ମାଟି ମା' ଅଙ୍ଗନେ ହସେ କେତେ ମନଲୋଭା ଛନଛନେ
ସବୁଜ କେଦାର ଦାମ, ସୁନେଲି ସପନେ ।
ମନ କା'ର ମଜ୍ଜିଯାଏ ବଣ୍ୟ ବାତାୟନେ ?

ସେ ମାଟିର ତାଜ୍ ଖୋଜେ କ୍ଷମତାର ଅଭୁଲ୍ ଆଓ୍ୱାଜ୍,
ଲିପ୍‌ସା ଓ ବୁଭୁକ୍ଷାରେ ମଜାନ୍ଧ ନବୁଜ ।
ଏ ମାଟିର ମା' ଲୋଡ଼େ ମମତାର ସପନ ଲହରୀ
ପ୍ରକୃତିର ଉଦ୍ଦାମ ଆହବେ ଭରିଦେଇ ସବୁରି ଅନ୍ତରେ,
ଅମୃତ ଝରି । ୩ ।

ସେ ପାଖିରେ ଝରଯାଏ କେତେ କେତେ ଅମାପ ନକ୍ଷତ୍ର
ଅସରନ୍ତ ପରଶର ଜ୍ୟୋତି,
ଅଫୁରନ୍ତ ମଦାଳସା ପ୍ରୀତି
ଏ ପାଖରେ ଲୋଟିଯାଏ ବନ୍ଧୁ ! ଶତ ଶତ ପ୍ରାଣ ପେଟର ଜ୍ୱଳନେ
ଦିନ-ଦିନର ଉପବାସେ କାନ୍ଦେ କଳ କଳେ, ଚୂଲି ତା ନଜଳେ ।
ମନ ଓରମାନ ଖାଲି ମନରେ ଗୁମରେ,
ସ୍ୱାଧୀନ କି ପରାଧୀନ ଜିଜ୍ଞାସା କରେ ? । ୪ ।

ସେ ସମାଜେ ନିତି ଝରେ ଆଷାଢ଼ର ଧାର-ଶିହରଣ ଝଙ୍କାର ଅସର
ଏ ସମାଜେ ଥିର ଥିର ଝରେ ଲୁହଧାର ଶ୍ରମର ପସର ।
ସେ ଅଙ୍ଗନେ ଜଳଜଳ ମିନାର ଝଲକ, ଲୋଭିତ ସୁପ୍ରଭ
ଏ ଅଙ୍ଗନେ ଲିଭି ଲିଭି ଯାଏ ଅସ୍ପଷ୍ଟ ଦ୍ୟୋତକ
ପ୍ରକୃତିର ଚନ୍ଦ୍ରନେ ଆଭ । ୫ ।

ଏ ମାଟିରେ ଖେଳବୁଲି ଫଗୁଲା ବାହାରେ, ଥୁରୁଥୁରୁ ଶୀତ କାକରରେ
ଦଶେ ଦିନ ଅଳସ ବେଳାରେ, ଅଧା ପେଟେ, କଣା ଘୁଡ଼ ତଳେ
ସେ ମାଟିରେ ବାସର ଆସର, ଉଷୁମ ଦେହରେ ଲୋଡ଼ି
ଆଶ୍ଳେଷ ଭରି । ୬ ।

ସେ ମାଟିରେ ବଢ଼ିଗଲେ ରଙ୍ଗର ମିନାର ଅକଳନ, ପ୍ରତିଟି ଦିନର
ଏ ମାଟିରେ ସଢ଼ିଗଲେ ବାସହୀନ ଗୃହ ଅକ୍ପାର, ପ୍ରତି ସମ୍ବରର । ୭ ।

ଏ ମାଟିର ସନ୍ତାନ ଲୋଡ଼େ ଜ୍ଞାନର ଆଲୋକ ପ୍ରକୃତି କୋଳେ,
ସେ ମାଟିର ସନ୍ତାନ ଝେଲେ ଆଲୋକର ପ୍ରାସାଦର ତଳେ ।
ଜ୍ଞାନର ପ୍ରଦୀପ ସେଠି ଦୀପ୍ତିମାନ୍ ଉଜ୍ଜ୍ୱଳ ହେଲେ,
ଅଜ୍ଞାନର ତମିସ୍ରା କୁହେଳି ଏଠି ଘେରେ ପ୍ରତି ଘୁଡ଼ ତଳେ । ୮ ।

ତୁମେ ଖୋଜ ପରିବେଶ ସୁବେଶ ଆଳରେ
ଅପ୍ରାକୃତ ଆବେଷ୍ଟନୀ ତଳେ
ଆମେ କହେ ଖୋଜ ବୁଲୁ ପରିବେଶ ପ୍ରକୃତିର କୋଳେ ?
ଆମ ମାଟି, ଆମ ବନ, ଆମରି ଝରଣା, ଏ ମାଟିରେ ନକରେ ଛଳନା
ତୁମ ମାଟି, ତୁମରି ଉଦ୍ୟାନ, ତୁମରି ଝରଣା,
ସେ ମାଟିରେ ହୁଏ ବିଡ଼ମ୍ବନା । ୯ ।



# ଶିକ୍ଷାର ଗତି ଓ ପ୍ରଗତି

● ବିଷ୍ଣୁ ଚରଣ ଧଳ

ଆଜ ଶିକ୍ଷାର ସୌରଭ
ଦୁର୍ନୀତିର ଗଉରବ
ଘୃଣ୍ୟ ତୋଷାମଦ   କରଇ ଆମୋଦ
ସମାଜର ଏକ ଉଦ୍ଭବ । ୧ ।

ଶିକ୍ଷାବିତ୍‌ର ମୁକୁଟ ନେଇ
ଡିପ୍ଲୋମା ଗୁଚ୍ଛ ଛପେଇ ହୋଇ
ରୁପେଲ ସ୍ୱପ୍ନର   ଅଟ୍ଟାଳିକା ରଚେ
କ୍ଷୁଧିତ ଦ୍ୱିପୀନ ହୋଇ । ୨ ।

ଗୃକଶ୍ରର ଏ ଯେ ସମସ୍ୟା
ଜୀବନର ଏକ ତମସା
ତାମସା ନେଇ   ଯେମାନେ ଖେଳନ୍ତି
ମରୁ ତାଙ୍କର ତୃଷ୍ଣା । ୩ ।

ଭ୍ରୂଣ ହତ୍ୟାର ପଥ ନେଇ
ପଥ ଯେ ଗୃଟଲ ନିର୍ଭୟ ହୋଇ
ଶାନ୍ତି ଯେ କେତେ   ପଦଲିଖିତ
ଲିଖନର ଦେଣ ଦେଇ । ୪ ।

ତୁମ କୃପାଣ ଧାରେ
ଯାହାର ଲୋତକ ଝରେ
ଲେଲିହାନ କାଳ   ଆତଙ୍କ ରଚିବ
ସମସ୍ତର ଫାଙ୍କ ଦ୍ୱାରେ । ୫ ।

ମର୍ମରିତ କରି ଉଠେ
ତରୁଣ ଶିକ୍ଷକ କଣ୍ଠେ
ଅକ୍ଷୟ ହେଉ   ଶିକ୍ଷା ଜାଗତେ
ଧର୍ମର ଜପ କଣ୍ଠେ । ୬ ।

ସେ ଯେ ଲୋକଙ୍କ ବାରିଦ ଚୂଳେ
ଅଭିଶାପ ତାର ତାଙ୍କ
ନଶ୍ୱର ସିଏ ଷଶ୍ୱର ସିଏ
କରମର ନ୍ୟାୟ ତୋଳେ । ୭ ।
ମିଶିଯାଅ ଧୂଳି ସାଥେ
ଗୃହି ନରମର ପଥେ
ଲକ୍ଷ୍ୟ ତୁମର ସେବା ଓ ତ୍ୟାଗ
ମନ୍ତ୍ର ଜନାଦଗତେ । ୮ ।
ଜାତିର ଶଙ୍ଖ ବାଯୁଦ
ଗତେ ଜ୍ଞାନର କୋଣାର୍କ
ଚିର ଭସ୍ୱର ସଦା ଜାଜୁଲ୍ୟ
ଶିକ୍ଷକତା ତାର ସମ୍ପଦ । ୯ ।

# ଆହ୍ୱାନ କରେ ଆଜି

● ହାଡ଼ବନ୍ଧୁ ସାହୁ

ଆହ୍ୱାନ କରେ, ଆହ୍ୱାନ କରେ, ଆହ୍ୱାନ କରେ ଆଜ
ମୁକ୍ତ ମଶାଲ କରେ ଧରିବାକୁ
ସୁପ୍ତ ଉଠରେ, ଜାଗ୍ରତ ରୂପ ସାଜ—
ଜାଗିଉଠ ବାରେ ସିଏ ଅଛ ସବୁ ପଛେ
ତୁମେହିଁ ବିଶ୍ୱ, ତୁମର ଭିତରେ ଜାତିର ମମତା ରହିଛି ପର
ଜାଗାୟ ଚେତନା, ଜାଗାୟ କାମନା ତୁମରି ହାତେ
ତେବେ କିଆଁ ତୁମେ ସହିବ କଷଣ,
ସହିବ ଶୋଷଣ, ସମାଜର କାରାଗାରେ
ଭାଙ୍ଗ ଅର୍ଗଳ, ଫିଙ୍ଗି ଦିଅରେ ପାଚେରୀ ତାହାର
କ୍ଷୁଧିତ ପ୍ରାଣ ସାଜ—
ଜାଣିନାହିଁ ସିଏ, ଜାଣିନାହିଁ
ଭୋକିଲା ମନର ଅଭିଶାପ ସିଏ ଶୁଣିନାହିଁ
ନିସ୍ତବ୍ଧ ଏହି ଗୋପନ ମନର ଇଲାକାରେ
ଜୀବନର ରୂପ ନାହିଁ ଆଜ—

ତୁମେ ଦେଲ ଶିକ୍ଷା ଗଢ଼ିଲ ଜୀବନ କାହାପାଇଁ
ଭସ୍ମାସୁର ପରି ତୁମେ ମୁଣ୍ଡେ ହାତ ଦେବାପାଇଁ
ତୁମରି ଦାନରେ ଏହି ମାଟିପରେ ହସ ଫୁଟିଲା
ଏ ମାଟି ଅଶାନ୍ତ ଶିକ୍ଷା ଗାରିମାରେ ପୁରି ଉଠିଲା
କହି ପାରିବକି କିଏ ?
ଏ ମାଟି ଉପରେ କେଉଁ ଦିନେ କେବେ
ତୁମ ପାଇଁ ଟିକେ ଖୋଜୁଛୁ ଶାନ୍ତି ବାଟ ?
କେହି କହିଲନି ତୁମେ ଅଟ ସବୁ ଏ ଦେଶର ମାନ ଦଣ୍ଡ
ଭାବିଲନି ସିଏ ଭାବିଲନି—
ଅନ୍ତରର କରି ଦୁଃଖ ଟିକିଏ ବୁଝିଲନି,
ତେବେ ତୁମେ କିଆଁ ନୀରବ ରହିବ
କଲମରେ ତୁମ ନାହିଁକି ଶକ୍ତି
ନାହିଁକି ତୁମର ଚିରନ୍ତନ ମନୋଭାବ ?
ଜାଗି ଉଠ, ହୃଦୁଚି ଗହ୍ୱରେ ସୁପ୍ତ ଆଲୋକ ଜାଳି
ଦେଖାଇ ଦିଅରେ, ସତ୍ୟର ସ୍ୱର, ଶିବର ପ୍ରତୀକ
ସୁନ୍ଦର ଶାନ୍ତି ଆଜି—
ଯେତେଦିନ ଯାଏ ଏ ଜାତି ବୁଝିନି ଶିକ୍ଷାର ମୂଲ୍ୟବୋଧ
ସେତେଦିନ ଯାଏ ଶିକ୍ଷକ ପାଇଁ ମନରେ ତାହାର
କଳା ମେଘ ପରି ଗର୍ଜନ ଥିବ ଶୁଭି
ପାରିବନି ସିଏ, ପାରିବନି,
ଲେଲିହାନ ଏହି ଶିକ୍ଷକ ମନର ଜ୍ୱାଳାପରେ
ଅତ୍ୟାଚାରର ଗରଳ ବର୍ଷାକରି,
ଯଦି ସିଏ କେବେ ଗରଳ ସାଗର କରେ ସୃଷ୍ଟି
ନୀଳକଣ୍ଠ ପରି ପିଇ ଦେଇ ତୁମେ
ନାଚରେ ତାଣ୍ଡବ; ଧ୍ୱଂସ କରରେ ଅହମିକା
ପାରିବନି ତୁମେ ପାରିବନି
ନାହିଁକି ତୁମର ମନରେ ସାହସ
ନାହିଁକି ତୁମର ପ୍ରାଣରେ ଆଭାସ
ଗଲାକି ତୁମର ପୂର୍ବ ଗାରିମା ପୂର୍ବ ଗୌରବ ଭାଜି—

ଆମରି ରକ୍ତେ ଗଢ଼ା ହୋଇଅଛି ଦେଶର ମାନ
ଆମରି ମନରେ ଲେଖିଛନ୍ତି ଆମେ ସବୁର ପ୍ରାଣ
ଆମରି ମନ୍ତ୍ରେ ସୁପ୍ତ ଚେତନା
କଙ୍କାଳ ଯେତେ ଉଠରେ ହସି
ପରିବେଶ ସବୁ ସବୁଜ, ରଙ୍ଗୀନ ହୁଅଇ ମିଶି
ତେବେ କାହିଁ ତୁମେ ସର୍ବହରା
ବିଷାଦ ଭରା, ନାହିଁକି ତୁମର ଶକ୍ତି
ପାରିବନି ତୁମେ ପାରିବନି
ବିଶ୍ୱାମିତ୍ରର ନୂତନ ସୃଷ୍ଟି ଇଙ୍ଗିତରେ
ନବୀନ ଧ୍ୱଂସ, ନବୀନ ଦୁନିଆ ପାରି ସାଜି—

ପ୍ରଳୟ ଝଞ୍ଜା ବହି ଚାଲିଅଛି
ଏହି ସମାଜର ମଥାନରେ
ପରମାଣୁ ଆଜ ଚିତ୍କାର କରେ
ଅନନ୍ତ ସ୍ରୋତ ଇଲକାରେ
କିପରି ବଞ୍ଚିବ କ୍ଷୁଦ୍ର ମାନବ ପ୍ରାଣ
କିଏ ସେ ଦେବରେ ଶୁଷ୍କ ମରୁରେ
ଜନ ଜୀବନର ସମ୍ମାନ, ବଡ଼ପଣ ?
ପେଟକୁ ଲଗାଇ ପିଠି ସାମନାରେ
ଆମେ କି ପାରିବା ବିଶ୍ୱ ଶାନ୍ତିର ଡିଣ୍ଡିମ କେବେ ପିଟି ?
ପାରିବାରେ ଆମେ ପାରିବାରେ
ବାରବାଟିର ସୁପ୍ତ ସିଂହକୁ ଜାଗ୍ରତ କରିପାରିବାରେ
କ୍ଷୁଧିତ ଆମ ସିକ୍ତ ବାସନା ପଡ଼ିବନି କେବେ ତଳେ ଭାଜି—

ଅତୃପ୍ତ ଏହି ମନର ତୃପ୍ତ ବେଦନାରେ
ବିଶ୍ୱ ଶାନ୍ତିର ମନ୍ତ୍ର ଛୁଟାଅ ପବନରେ
ଦଧିଚିର ସ୍ମୃତି ଫଳକରେ ଲେଖ
କାମନା ଆମର କାମ୍ୟ ହେଉରେ ବିଶ୍ୱ ଶାନ୍ତିର ପଥଧାରେ
ଜାତୀୟ ସଂହତି ଦୃଷ୍ଟି ହେଉରେ
ଅଗ୍ନିର ଆମ ପ୍ରାଣ ପ୍ରଦୀପ ଚେତନାରେ

ଜାଗିଉଠ ଆଜ ଜାଗିଉଠ
ଜଗାଇ ଦିଅରେ ଚରନ୍ତନର ମାପକାଠି,
ଦୁର୍ବଳ ଏହି ସମାଜକୁ
ଚେତାଇ ଦେବାରେ କଳଙ୍କ ବିଲୋପ କରିବାକୁ,
ନାହିଁକରେ ସେହି ଶକ୍ତି
ବିଦ୍ରୋହ ତୁମେ ପାରିବନି କରି
ଯିଏ ସେ ସଂହତି ନାମରେ କହିବ ମିଥ୍ୟା
ଶାନ୍ତି ନାମରେ ଯିଏ ସେ କରିବ
ଅନେକ ପ୍ରାଣକୁ ହତ୍ୟା ?
ପାରିବନି ସିଏ, ପାରିବନି
ତୁମରି ଉଜ୍ଜ୍ୱଳ ଆଲୋକ ସ୍ପର୍ଶେ
ଚକ୍ଷୁରୁ ତାର ଟାଣି ଆଣିବାରେ
ଦୃଢ଼ତାର ସବୁ ଆତସବାଜି—

ଶେଷୋକ୍ତି ମୋହର ଆହ୍ୱାନ ପାଇଁ
ଜୀବନର ମୂଲ୍ୟ ପରେ,
ଶାନ୍ତି, ସଂହତି ବିଶ୍ୱ କଲ୍ୟାଣ ପାଇଁ
ଆଣିଦେବା ସଦା ପ୍ରଶସ୍ତ ପ୍ରାଣ ନେଇ
ଶକ୍ତି ତୁମେରେ ତୁମେ
ହିଂସା, ଦ୍ୱେଷର ପ୍ରାଚୀର ଭାଙ୍ଗି
ହୀନ ମନ୍ୟତାର ଶ୍ମଶାନ ତଳୁ
ଜାଗ୍ରତ କର ନୂତନ ଶିକ୍ଷାର ନୂତନ ମୂଲ୍ୟ ବୋଧ
ହୀନ ନୁହେଁ ତୁମେ ହୀନ ନୁହଁ
ଯିଏ ସେ କହିବ
ତୁମ ଅଶ୍ରୁଜଳେ ପ୍ରତିଫଳ ତାର ଶେଷ ହେବ
ସର୍ବେ ଆଜ କୁହ ଏକ ତାନେ
ଏକତାହିଁ ଆମ ଶାନ୍ତି, ସଂହତି
ଏକତା ଆମର ନାହିଁ ଭାଜ—



# ଆହ୍ୱାନ

ଘନଶ୍ୟାମ ପାଣି

ହେ ବିଶ୍ୱର ଆଲୋକ ବର୍ତ୍ତିକା
ଆଲୋକର ବହ୍ନିଡ଼ ଜଳାଇ
ଆଜ୍ଞାନ-ଅନ୍ଧ'ର ଦୂରୀଭୂତ କର
ସୂର୍ଯ୍ୟର ସନ୍ତାନ ।

ପ୍ରଭାତରେ ହଟିଯାଉ
ଭ୍ରାନ୍ତ-କୁଝ୍‌ଟିକା ମଣିଷ ମନରୁ
ଲୁଚିଯାଉ ହିଂସା, ଈର୍ଷା, ଦ୍ୱେଷ
ଆଜି ଯେତେ ବ୍ୟଭିଚାରୀ ଭାବ
ଅମୃତମୟ ବିଶ୍ୱକୁ ଏ କରୁଅଛି କଳୁଷିତ
ହନ୍ତସନ୍ତ ଭୟାର୍ତ୍ତ
ତୁମର ଯାଦୁକରୀ ସ୍ପର୍ଶରେ ।

ତୁମେ ମନ୍ତ୍ର-ଦ୍ରଷ୍ଟା, ତୁମେ କ୍ରାନ୍ତଦ୍ରଷ୍ଟା
ବେଦଯୁଗ-ଗୁରୁ-ରକ୍ତ ପ୍ରବାହିତ ତୁମ ଧମନୀରେ,
ତୁମ କଣ୍ଠେ ଗୁଞ୍ଜରିଉଠୁ
ସେଇ ମହାବାଣୀ, 'ସର୍ବେ ଭବନ୍ତୁ ସୁଖୀନଃ'
ଯାହା ଦିନେ ବିଶ୍ୱେ ଦେଇଥିଲା ଅମୃତର ସ୍ୱାଦ ।

କମ୍ର କଳାକର
କାନ୍ତ-କରେ ତୁମ
ପ୍ରଦତ୍ତ ଠ ମାଟିର-ପିତୁଳା
ହସି ଉଠୁ ଫୁଲର ସମାନ
ହସାଉ ଏ ଜଗତ ଆମର
ମହନୀୟ କରୁ ପ୍ରତିଟି ଅନ୍ତର
ମାନବିକ-ମନ୍ତ୍ର ହେଉ ମୂଳାଧାର ତା'ର ।

ଆତ୍ମାରେ ଆତ୍ମାକୁ ଯୋଡ଼ି
ଗାଉ ସେ ଯେ ଜୀବନ-ସଂଗୀତ
ବସନ୍ତ କୋକିଳ ସମ
ପ୍ରୀତି-ଫଲ୍‌ଗୁ-ପ୍ଲାବନେ
ଧନ୍ୟା ହେଉ ଏ ପଥମ ପୃଥିବୀ—
ନିଖିଳ ଦୁଆରେ ଠିଆହେଉ ସେହି
ଗୋପବଂଧୁ ସମ ।
ସକଳର ଦୁଃଖେ ଅଶ୍ରୁ-ମୁକ୍ତା ଢାଳୁ
ଚୂଡ଼ା ଶୃଙ୍ଖଳକୁ ବାନ୍ଧି,
ଦଧିଚୀର ତ୍ୟାଗ ନେଇ
ରକ୍ଷାକରୁ ଦେବତା ସକଳେ,
ଦେବତାର ଦାନ ଯାହା
ଠିଆ ଆଜ ଭସ୍ମଙ୍କର ଧ୍ୱଂସର ଦୁଆରେ ।
ଜୀବନ-ମୁକ୍ତି-ମନ୍ତ୍ରଦାତା ହେ ମହାନ୍ ଗୁରୁ
ସତ୍ୟ-ଶାନ୍ତି ଅହିଂସାର ବାଣୀ-ସୁରଧୁନୀ ତବ
ନବ-ଆତ୍ମା, ଧୌତକରି ପୁଣ୍ୟ ପ୍ରଭାବରେ
ଭରିଦେଉ ଏ ସାରା ଜଗତ ।
ମଣିଷ ମନର ସୁନେଲି-ସପନ-ଫୁଲ
ରକ୍ତ-ଝଡ଼େ ବୃନ୍ତଚ୍ୟୁତ
ହେବାପାଇଁ ଦଅନା ସଙ୍କେତ ।
ସମତା-ମମତା-ମନ୍ତ୍ର
ସ୍ୱଚ୍ଛଳ ଜୀବନ ପ୍ରବାହେ
ହସୁଥାଉ ଏ ବିଶ୍ୱ —
ଏଇ ଆମ ଶାଶ୍ୱତ-କାମନା ହେଉ ।
ହେ ସିଦ୍ଧ-ସାଧକ-ଶିକ୍ଷକ
ଅମୃତ-ସନ୍ତାନ ତୁମେ
ଅମରତ୍ୱ ଦେଇ
ଅମର-ମଣିଷ ସର୍ଜନା କର
ଯିଏ ହେବ ଶୁଭଙ୍କରୀ, ସତ୍ୟ, ଶାନ୍ତିର ପୂଜାରୀ
ଆଗାମୀ ନୂତନ ପୃଥିବୀ ପାଇଁ ।



# ଏ ଚିତ୍କାର ଆଗାମୀର

**ରାଜ କିଶୋର ହୋତା**

ଆମେ ସବୁ
ଆମ କରଣୀରେ
ହୋଇ ନାହେଁ ଆମେ ।
ଅନେକ ସେମାନେ, ତୁମ୍ଭେମାନେ, ମୁଁ ମିଶି ମିଶି
ସ୍ତିରକୃତ ସ୍ତୂପ ମଧ୍ୟୁଁ ଜନମ ଆମର ।
ଏ ସକାଳ
ସୁନେଲି କିରଣ
ଏ କୁସୁମ ମଧୁ ସମୀରଣ
ଅନେକ ଅକ୍ଷତ ସବୁ ଭାବି ଭାବି ଚିନ୍ତି ଚିନ୍ତି
ଆମପାଇଁ ଆସିଛନ୍ତି ଧରି
ସୁଖ ସ୍ୱପ୍ନ ଯେତେ ।
ଆମେ ସବୁ ବୃଥା ସପନରେ
ବୁଡ଼ି ବୁଡ଼ି ଅକ୍ଷତକୁ ଭୁଲିଗଲେ ।
ଏଇ, ଶୁଣ ! ଭବିଷ୍ୟତ କରୁଛି ଚିତ୍କାର
"ହେ ବର୍ତ୍ତମାନମାନେ
ତୁମେ ସବୁ ଭୁଲିଲ ତୁମକୁ ?
ହିଂସା, କ୍ରୋଧ, ସ୍ୱାର୍ଥପରତାରେ
ଧନ, ମୋହ, କ୍ଷମତା ମଦରେ ।
ଆଜି ତୁମରି ରକତୁଁ
ଆମେ ସବୁ ଯେତେ ଝରକା କଡ଼ରେ
ଲୁଚକାଳି ଖେଳୁଥିଲୁଁ,
ତୁମ ପରେ ବର୍ତ୍ତମାନ ହେବୁଁ ବୋଲି
ସତେ କ'ଣ ଝଡ଼ିଯିବୁଁ ତୁମରି ସଙ୍ଗରେ ?
ପରମାଣୁ ଏକ ଯେନ
ଝୁଲୁଛି ଏ ସଭ୍ୟତା ବୁକୁରେ" ।

ଏବେବି ସମସ୍ତ ଅଛୁ
ଏବେବି ଯାଇନି ଗଡ଼ି
ମଧୁଲଗ୍ନ ମଙ୍ଗଳ ମୁହୂର୍ତ୍ତ,
ଏବେବି ବାଜିବ ଶଙ୍ଖ
ଭାବନା, ଗବେଷଣାର ଶୁଭ ବିବାହ ଲଗନେ,
ତାପରେ ଯେ ମଧୁଶଯ୍ୟା
ନବାଗତର କୁଆଁ କୁଆଁ ଧ୍ୱନି ।

ଏ ସଭ୍ୟତା ବନ୍ଧମୂଳରେ
ଗୋଟେ ପାଖେ ବସ ତୁମେ ହେ ଶିକ୍ଷକ
ନେଗେଟିଭ୍ ସାଇନ୍ ଗୋଟିଏ
ନିଜକୁ ଜଳାଅ, ସ୍ୱାହା କର
ଆଗାମୀ ଶତାବ୍ଦୀ ପାଇଁ

ଶାନ୍ତି ହେବ ଶାନ୍ତିର ବୈରଣ
ଆଗାମୀର ପାଇଁ ।



## ଜାଗ ଗୁରୁକୁଳ

● ମଙ୍ଗଳ ପ୍ରସାଦ ପ୍ରଧାନ

ଜାଗ ଗୁରୁକୁଳ ଜଗାଇ ସମାଜେ ଜାଗରଣ
ଭ୍ରଷ୍ଟ ସମାଜ ଧୃଷ୍ଟପଣିଙ୍କ ମସ୍ତକେ ପଡ଼ୁ ଅଗ୍ନିବାଣ ।

ଦୁର୍ଜ୍ଜନ ବନ୍ଧୁ ଲାଞ୍ଛନା ସନ୍ଧୁ
ହୁଅନାହିଁ ଲେଶେ ହୀନମନ
ପ୍ରଜ୍ଞାଦାତା ହେ ପ୍ରାଜ୍ଞଜନ
ଧର ଧର ଆତ୍ମ ଅଭିମାନ

ବୁଝ଼ୁ ବା ନ ବୁଝ଼ୁ ଇତର ଜନ
ଅଂତରେ ତୁମେ ସ୍ବୁଛ
ବାର ବାର ଦେଖି ତୁମରି ପାଇଁ
ଦରବାର ଦ୍ୱାର ରୁଦ୍ଧ ।

ନ ଥିଲେ ନ ଥାଉ ତୋପ କମାଣ
ହାତରେ ତ ତବ କୋଟିଏ ପ୍ରାଣ
ଦଅ ଦଅ ତାଙ୍କୁ ସଂସ୍କାର ଦୀକ୍ଷା ଦୀକ୍ଷା ଆଗ୍ନେୟ ଗ୍ରନ୍ଥ ମାଳ ।

ଚଢ଼ି ଚଢ଼ି ହୋଇ ଚଢ଼କ ମାରୁ
ଚକ୍‌ମକ ହୋଇ ଚପଳା ଖେଳୁ
ଝକ୍‌ମକଝର ଚମ୍ପ ସ୍ଫୁଲିଙ୍ଗେ ଅଗ୍ନିକଣିକା ଯାଉତ ଝରି ।

ଗଢ଼ି ଗଢ଼ି ଦଅ ବିପ୍ଳବୀର ଥାଟ
ବଢ଼ ବଳୀୟାନ୍‌ର ସଇନ ସାମଂତ ବିପ୍ଳବୀ ସମରାଟ ।

ଯୁଝ଼ିବେ ସେ ଅସୀ ମସୀ ରଶ୍ମି ସମରେ
ଦୁର୍ବିସହ ଶକ୍ତିଧର ମହାବିକ୍ରମରେ

ଗୁରୁଦ୍ରୋହୀ ସମାଜର ହାଡ଼ ରକ୍ତ ମାଂସ
ଭଂଗିଚୁରି ଜାଳି ପୋଡ଼ି କରିବେ ପାଉଁଶ

ଜଳୁ ବର୍ବର
ହେଉ ଜର୍ଜର

ପାପର ଭସ୍ମେ ଭରତ ଭୂଇଁ
ପୁଣ୍ୟ ପ୍ରସୂତ
ସୁଧା ସେଚିତ

ସମାଜ ଉଠୁ ବୈକୁଂଠ ନେଇ
ପ୍ରସରି ଯିବ ସକଳ ପ୍ରାଣେ ଗୁରୁ ଗୌରବ ଗାଥା
ଦୈନ୍ୟ ନଥିବ ଖୋଜିଲେ କାହିଁ ପୃଥ୍ୱୀ ହିଁ ଥିବ ଦୟା
ଅନୁଗାମୀ ତବ ଅନୁଗାମୀ
ଘୋଷିବ ଜଗତ ଜୟ ଗୁରୁ ଦେବସ୍ୱାମୀ ।



# ଶିକ୍ଷକ ମୁଁ ଶିକ୍ଷକ

● ଭ୍ରମରବର ସାମଲ

ଶିକ୍ଷା ମୋର ବେଷ୍ଟ ଭୂଷା
　　　　ମୋ ବେଶଭୂଷା ପରଷାରେ
ଦେଶ ହେବ ସରସା—
　　　　ମନେ ଭରି ଏ ଆଶା
ଶିକ୍ଷା ଶେଷେ ଶିକ୍ଷକତ୍ୱ
　　　　ବରନେଲି ସହସା ।
ପାଇଗଲି କର୍ମକ୍ଷେତ୍ର
　　　　ଧରି ମନେ ଭରସା ॥ ୧ ॥
ଲେଖି ବେଶି ନେଲି କମ୍
　　　　ସାମାନ୍ୟ ଏ ପଇସା !
ସମ୍ମାନକୁ ଜଗି ରଖି
　　　　ମେଲି ଦେଲି ବେଶଭୂଷା
ପଢ଼ାଇଲି ମନ ଦେଇ
　　　　ଯେତେ ପାଠ ସରସା
ବୋର୍ଡ଼ ପରୀକ୍ଷା ଫଳ
　　　　ଯଦି ହେଲା ନିରଷା
ନାଁ ହଲା ହାଟ ଗୋଳ
　　　　ଶୁଣାଗଲା ସହସା ॥ ୨ ॥
ଧମକ ମିଳିଲା ନାନା
　　　　ଅସାମ୍ବିଧାନିକ ଭାଷା
ଭାବିଲି କୁଆଡ଼େ ଯିବି
　　　　ବୟସ ଖସର ଖସା
ମନେ ମନେ ଠାଣ ଧରି
　　　　କରିଣ ବହୁ ଭରସା
ଧାଇଁଛି ଓସ୍ତା ଅଫିସି
　　　　ମନେ ଧରି ବହୁ ଆଶା ॥ ୩ ॥



# ଧନ୍ୟ ଏ ଶିକ୍ଷାନୀତି

● ଭକ୍ତରଞ୍ଜନ ମହାରଣା

ଭାଇମାନେ ହେ, ଧନ୍ୟ ଏ ଶିକ୍ଷାନୀତି, ଭାଇମାନେ ହେ
ନ ବୁଝିବା ଲୋକ, ଭାବଇ ସହଜ, ବୁଝିବା ଲୋକକୁ ଲାଗଇ ଭୀତି । ୧ ।

କହୁଛନ୍ତି ଗୁରୁବାପୁଡ଼ି, କିନ୍ତୁ ନାହିଁ ଆମ କର୍ତ୍ତୃତ୍ୱ
ଉପରୁ ଲଦଣ ଆଇନକାନୁନ, ଦେଖାଇ ଦିଅନ୍ତି ଆମର ତ୍ରୁଟି । ୨ ।

ସରକାର ବଦଳିଲେ ଯେବେ, ଶିକ୍ଷାନୀତି ବଦଳିଲେ ତେବେ
ଶିକ୍ଷକ ବାପୁଡ଼ା ଭାବି ନ ପାରଇ, ଏହା ସବୁ ସତେ ହୁଏ କମିତି । ୩ ।

ଆମ ଆଡ଼ହକ ଶ୍ରେଣୀ, ନଥାଏତ କାହାର ଖାତିର
ପାଞ୍ଚବର୍ଷ ଖଟି ଦାଣ୍ଡକୁ ଆସେଣି, ହରାଇଣ ମାଷ୍ଟ୍ର ନିଜର ସ୍ଥିତି । ୪ ।

କହୁନାହିଁ ଉପକରଣ, ଏସ୍. ୟୁ. ପି. ଡବ୍ଲ୍ୟୁ. ନାମକରଣ
ନାହିଁ କାମ କହୁ ପିରିୟଡ଼ ଅଛି, କହିବାକୁ ସତେ ଲାଜ ଲାଗେଟି । ୫ ।

ଘର ନାହିଁ ଇସ୍କୁଲ ଅଛି, ଗଛମୂଳେ ପଢ଼ା ଚାଲିଛି
ଟି. ଭି. ମାଧ୍ୟମରେ ପଢ଼ା ହେବ କିନ୍ତୁ, ନାମନବୋଦୟ ବିଦ୍ୟାଳୟଟି । ୬ ।

ପାଠପଢ଼ି ବଢ଼େ ବେକାରି, ନାହିଁ ତାଙ୍କ ପାଇଁ ଚାକିରି
ବିନା ଓଡ଼ିଶାରେ ଚାକିରି ମିଳିବ, ଏକଥାତ କେବେ ଶୁଣାନାହିଁଟି । ୭ ।

ଅନୁଷ୍ଠାନ ଗଢ଼ିବେ ଲୋକ, ପିଲା ଚାନ୍ଦାଦେଇ ପଢ଼ିବେ ପାଠ
ଶିକ୍ଷାର ପ୍ରସାର ନାମରେ ଠକେଇ ଏକଥା କି ତୁମେ ଜାଣନାହିଁକି ? ।୮।

ପାଠପଢ଼ା ନାହିଁ ଦରକାର ଏହା ସରକାରୀ ବିଚାର
ମୁକ୍ତ ବିଦ୍ୟାଳୟ ନାମରେ ଚାଲିବ, ଶିକ୍ଷାକ୍ଷେତ୍ରେ ହେବ ହରିଲୁଟ୍‌ଟି । ୯ ।

ସ୍କୁଲର ନାହିଁ ସୁବିଧା, ସରକାର କରେ ମସୁଧା
ଏକବିଂଶ ଶତାବ୍ଦୀର ଆହ୍ୱାନ ନାମରେ, ଖରଚ କରିବେ କୋଟି କି କୋଟି ।୧୦।



# "ଆମର ଐକ୍ୟ ପ୍ରତୀକ"

✿ କୃଷ୍ଣଚନ୍ଦ୍ର ପଟ୍ଟନାୟକ

କୃଷକ, ଶ୍ରମିକ, ଶିକ୍ଷକ ଏକତା-ଜିନ୍ଦାବାଦ
ଜାଗରେ ଏଏ; ଜାଗରେ ଏଏ
ଜନ୍ମଭୂମି ମା ଡାକେରେ-୨
ଜାଗରେ କୃଷକ, ଜାଗରେ ଶ୍ରମିକ, ଜାଗରେ ଶିକ୍ଷକ
ଜାଗରେ···ଏ, କୃଷକ, ଶ୍ରମିକ, ଶିକ୍ଷକ ॥ ୦ ॥

ରକ୍ଷକ ଆଜିରେ ଭକ୍ଷକ ସାଜନ୍ତି ଶୋଷକ ବ୍ୟଭିଚାର
(ଇନ୍‌କଲାବ-ଜିନ୍ଦାବାଦ-୩)
ବଜ୍ର ଶପଥ ମରିବୁ ପଛକେ ରଖିବୁ ମାଟି ମା ଶିର
ଆମେରେ···ଦୁର୍ବାର·····ଆମେରେ ବଳୀୟାର (୨)
ଜାଗ୍ରତ ସିଂହ ନିର୍ଭୀକ ॥ ୧ ॥

ଲୁହ ଲହୁ ଢାଳି ଆମେରେ ଗଢ଼ିଛୁ ସ୍ୱର୍ଣ୍ଣପ୍ରସୂ ଆମ ଦେଶ
(ଇନ୍‌କଲାବ-ଜିନ୍ଦାବାଦ-୩)
ଆମ ରକ୍ତ ଶୋଷି କଳାଧନେ କେତେ କରନ୍ତି ଭୋଗ ବିଳାସ
ଆମେରେ···ମହାକାଳ ଆମେରେ···ଦାବାନଳ (୨)
ଜଳବୁ, ଝୁରୁ, କାମୁକ ॥ ୨ ॥

ଦିଅ ମା ଆଶିଷ ଆଗେଇବୁ ଆମେ ନମାନି ଝଡ଼ଝଞ୍ଜା
(ଇନ୍‌କଲାବ-ଜିନ୍ଦାବାଦ-୩)
ଦୁଷ୍ଟ ଦଳନେ ଦୁର୍ଜୟ ଆମେ ଆମେରେ ଗର୍ବଗଞ୍ଜା
ଆମେରେ···ଆଦିତ୍ୟ ଆମେରେ ଦେଶ ଭକ୍ତ (୧)
ଆମର ଐକ୍ୟ ପ୍ରତୀକ ॥ ୩ ॥



# ଆ କାଂ କ୍ଷା

● ବସନ୍ତ ମଞ୍ଜରୀ ପଟ୍ଟନାୟକ

ସତାଅଣୀ ଆସୁଅଛୁ,
ଶତାବ୍ଦୀର ଶତରୂପ ନେଇ
ଅଭାବ ଅନାଟନର ଅସଂଖ୍ୟ ସମସ୍ୟା
ମୁଣ୍ଡ ଟେକେ ନସାହ
ସ୍ୱାଧୀ ଶିକ୍ଷକ, ଶିକ୍ଷିକାଙ୍କ ପାଇଁ । ୧ ।

କାହାପାଇଁ ନେଇଆସେ,
ଅନେକ ସ୍ୱପ୍ନର ମିନାର,
ଏବଂ କଳ୍ପନ ର ରଙ୍ଗୀନ କାଂଚଘର
କିନ୍ତୁ ସରକାରଙ୍କର ଏହି ବୈମାତୃକ
ସ୍ୱାଧୀ ଶିକ୍ଷକଙ୍କ ପାଇଁ
ଖାଲି ସିନା ମୂଠାଏ ଶୂନ୍ୟତା
ଆଉ ଅସରନ୍ତି ହାହାକାର । ୨ ।

କାହାର ନଜର ଅବା
କାହାର ସେ ପର
ମହାଭାରତର କର୍ଣ୍ଣ ଭଳି ନାହିଁ ତାର
ଧର୍ମର ସ୍ୱାକ୍ଷର,
କେନ୍ଦ୍ର ସରକାର ଓ ରାଜ୍ୟ ସରକାରଙ୍କର
ଭୁଝାମଣା ହେଉ ହେଉ
ସମୟର ରଥ ଚକ ତଳେ
ସ୍ୱାଧୀ ଶିକ୍ଷକର ହୁଏ
ଅନନ୍ତ ବିଳୟ । ୩ ।

ଅଳୁମାଂଶ ହିମାଚଳ
ହୁଏ ନନାହତ, ହିନ୍ଦୀ ଆମ ରାଷ୍ଟ୍ରଭାଷା,
"ହିନ୍ଦ୍ ହେି ହମ୍ ।
ଆଶା, ଆକାଂକ୍ଷାର ଲଗାମହୀନ ସ୍ୱପ୍ନ ନେଇ,
ହତାଶାର ବହ୍ନି ଚଳେ, ବାଞ୍ଛରହେ
ବେଗୃହ ହିନ୍ଦୀ ଶିକ୍ଷକ
ଆଗାମୀର ମୁକାବଲ ପାଇଁ । ୪ ।

ମନରେ ଅପୂରା କାମନା
ଯୁଗ ଯୁଗର ତୃଷ୍ଣା ଓ ଲମ୍ବା ପ୍ରତୀକ୍ଷା ପରେ
ପହିଲ ତାରିଖଟା ଆସେ
ଦରମା ମିଳିବାର ଆଶ୍ୱାସନା ନେଇ,
ଘରେ ରୁଗଣା ମାଆ, ବିପର୍ଯ୍ୟସ୍ତ ପରିବାର
ଗଦା ଗଦା ବାକି,
କିନ୍ତୁ ହାୟ !
ସବୁରି କଣ୍ଠରେ ସେଇ ଗୋଟିଏ କଥା
ଏବେ ନାହିଁ, ଟଙ୍କା ଆସିନାହିଁ ।
ଗଡ଼ିଯାଏ, ମାସ ପରେ ବର୍ଷ
ଅପେକ୍ଷାର ଶେଷ କେଉଁଠାରେ । ୫ ।

ମନେପଡ଼େ,
ଟ୍ରେନଂ ସାଥୀ ଗୋକୁଳ ପ୍ରଧାନ କଥା
ସାତ ମାସ ଦରମା ବନ୍ଦ ପରେ
ଦାରିଦ୍ର୍ୟର ଉତ୍ପୀଡ଼ନ, ହେଲ ବେକୁବେଳ
ସ୍ତ୍ରୀ, ସନ୍ତାନ ମୋହମୟ ସଂସାରକୁ ଛାଡ଼
ମାତ୍ର କେଇହାତ ରଜ୍ଜୁ ସାହାଯ୍ୟରେ
ବିଦ୍ୟାଳୟ କୋଠରୀରେ
ନେଇଥିଲ ଅନନ୍ତ ବିଶ୍ରାମ । ୬ ।

ଏମିତ ଚ ହନ ଗ୍ରନ୍ତ ହନ
କେତେ କେତେ ଗୋକୁଳ ପ୍ରଧାନ
ନପାରନ୍ତି ଜୀବନର ଖରସାମଂ ରଖି
କିଏ ରଖେ ହିସାବ ତାହାର ? ·
ତଳ ପାହାଚ ଠାରୁ,
ଉପର ପାହାଚ ଯାଏ
ସବୁର ଦଯ୍ୟାର ପାଣ
ଦୁଷ୍ଟ ହିନ୍ଦୀ ଗୋଷ୍ଠୀ,
ଲୁବ୍ଧ ହନା ହସ କେବେ
ହୋଇନାହିଁ
ଏମାନଙ୍କ ଜୀବନ ପାଥେୟ । ୭ ।

ହେ ନବାଗତ ଶତାଅଶୀ,
ଅଛୁ କିବା ସମାଧାନ
ତୁମର ପୃଷ୍ଠାରେ,
ଅଧମ ହିନ୍ଦୀ ଶିକ୍ଷକ, ଶିକ୍ଷିକାଙ୍କ
ବୁକୁ ଫଟା କରୁଣ ଚିତ୍କାର ତନ୍ତୁ,
ସତ ଅବା ଦେଖାଦେବେ
ସୌଭାଗ୍ୟ ସୁରୁଜ । ୮ ।



# ଶାନ୍ତି ସଂସ୍ଥାପନ

● ଶୁକଦେବ ସାହୁ

ବୃଢ଼ୀଆଣୀ ସୂକ୍ଷ୍ମ ସୂତ୍ର ସୀମାନ୍ତ ବନ୍ଧନରେ
ଝୁଲେ ଆଜି ବିଶ୍ୱଶାନ୍ତି ଷର୍ପୃଷ୍ଟ କଙ୍କାଳ
ଡାକଇ ଧ୍ୱଂସର ଘୋର ମାଡ଼ବସି ବସୁଧାର ଦୁଃଶାର ଗ୍ରନ୍ଥରେ
ନର୍ଘାତ ଅଶନ ସମ ମୁଷ୍ଟିଘାତ କରି
କହେ ଡାକ, କେ ରଖିବ ମୋତେ ?
ସର୍ବ୍ୟସାଠ ଜାତିସଂଘ, ଚତ୍ରଧାରୀ ୟୁନେସକୋ ଅବା
ନିରସ୍ତ୍ରୀକରଣ ମେଣ୍ଟ, ବିଶ୍ୱଶାନ୍ତି ଶୀର୍ଷ ସମ୍ମିଳନୀ
ନ ପାରିବେ ନେଇ ରଖି ବୁଢ଼ିଲା ତୋ ଭେଳା ।
କୌଞ୍ଚଦ୍ୱୀପେ ବାହାସ୍ଫୋଟ ମାନର ଜବସନ୍ଧ
ମହାଶୂନ୍ୟେ ଘାଟି ସ୍ଥାପି ଟିପିଲେ ସୁଇଚ
ଭସ୍ମୀଭୂତ କରି ବିଶ୍ୱ ହେବ ଛତ୍ରପତି ।
ଶ୍ୱେତ ଦ୍ୱୀପ ଉତ୍ତର ସୀମାରେ ମହାବଳୀ ବୀର ଘଟୋତ୍କଚ
ଗହଗହ ଅଟ୍ଟହାସ୍ୟ କରି କହେ ଆଜି
ବିଜ୍ଞାନ କୁହୁକ ମନ୍ତ୍ରେ ହରିନେବ ସମସ୍ତଙ୍କ ବୁଦ୍ଧି, ବଳ, ବୀର୍ଯ୍ୟ ।
କାହିଁ ଶାନ୍ତି ଧ୍ୱଂସର ବିଦ୍ୟୁତ ଚୂଲି ପାଉଁଶ ଗଦାଟିରେ
କାତରେ କମ୍ପଇ ବିଶ୍ୱ ଅଣୁ ପରମାଣୁ ଅସ୍ତ୍ର ତେଜଷ୍କ୍ରିୟ ବନ୍ୟାରେ ବହଳ
ଆଇନଷ୍ଟାଇନ ମ୍ଲାନ, ବ୍ୟର୍ଥ ତାଙ୍କ ବେଦନାର ଉଷ୍ଣ ଅଶ୍ରୁ ଧାର
ଗାନ୍ଧି, ବୁଦ୍ଧ, ମହାବୀର ଅହିଂସା ପୂଜାରୀ
ଭ୍ରାତୃଭାବ ବିକାଶର ପ୍ରମୂର୍ତ୍ତି ବିଗ୍ରହ ପ୍ରଫେଟ ମହମ୍ମଦ
କରୁଣା ବିନମ୍ର, କ୍ଷମା, ଦାନୀ ଯିଶୁଖ୍ରୀଷ୍ଟ
ସବୁରି ପ୍ରଭାବ ନ୍ୟୁନ ହୋଇଛି ଏ ଚଳନ୍ତି ଧନ୍ଦରେ ।
ସମସ୍ତଙ୍କ ଆବେଦନ ନିଷ୍ଫଳ ଅସାର ।
ମଣିଷ ଉପରେ ନାହିଁ ତିଳେ ମାତ୍ର ବିଶ୍ୱାସ ଭରସା ।
ମାଳିକାର ଶୀର୍ଷ ସୂକ୍ତ କରେ ପ୍ରଖ୍ୟାପନ
ନବ ଅବତାର ଧରି ଆସିବେ ଶ୍ରୀକଳକୀ
ମ୍ଳେଚ୍ଛ ସଂହାର କରିବେ ଧରଣୀ ଉଶ୍ୱାସ
ଉଡ଼ାଇବେ ଶାନ୍ତି, ପ୍ରୀତି, ପ୍ରେମ ବୈଜୟନ୍ତୀ
ଯୁଗାନ୍ତରେ ସ୍ଥାପି ଧର୍ମ ରାଜ୍ୟ
ବିଶ୍ୱଶାନ୍ତି କରିବେ ସ୍ଥାପନ ।

# ଆହ୍ୱାନ

ଈଶ୍ୱର ଚନ୍ଦ୍ର ମହାନ୍ତ

କୁହ କେତେଦିନ ଆଉ, କେତେଦିନ ତୁମେ ନୀରବ ହୋଇ ବସିଥିବ,
ଆତ୍ମ ପ୍ରବଞ୍ଚନା, ଶଠତା, ଛଳନା, ବ୍ୟଭିଚାର ଆଉ କେତେଦିନ ତୁମେ)
ଦେଖୁଥିବ ।

ବୁଦ୍ଧର ଦେଶେ; ଗାନ୍ଧୀର ଦେଶେ ହିଂସାର ନିଆଁ ଏହିପରି କ'ଣ
ଜଳୁଥିବ ।

ନରହନ୍ତାଙ୍କର ରକ୍ତର ହୋରି କେତେଦିନ ଏଠି ଲାଗିଥିବ ?
ଅମୃତ ସନ୍ତାନ ବିଷ ଜ୍ୱାଳାରେ କେତେଦିନ ଘାରି ହେଉଥିବ,
ତୁମବିନୁ ସତେ କୁହ ଏ ସମାଜେ ନୀଳକଣ୍ଠ କିଏ ବୋଲାଇବ ?
ସ୍ୱାର୍ଥର ଭୂମି ଏ ଭାରତ ନୁହେଁ ଆର୍ଯ୍ୟମୁନିଙ୍କର ଦେଶ ଏହି,
ତାଙ୍କରି ଦାୟାଦ କହିବାକୁ ସତେ ଲାଜ କି ଆମକୁ ଲାଗେନାହିଁ ।
ସାମାଜିକ ସ୍ଥିତି ବିପର୍ଯ୍ୟସ୍ତ ଆଜି ସବୁଠି ଅଶୁଭ ଶକୁନ,
ଦେଶର ଏଇ ଘଡ଼ିସନ୍ଧି ବେଳେ ଶିକ୍ଷକ ନୁହଁ ମଉନ ।
ହୁଅନ୍ତୁ ଚତୁର ନିଅନ୍ତୁ ପଛକେ ଅଷ୍ଟ ଐଶ୍ୱର୍ଯ୍ୟ ଆଉ ଅବା କେତେ ମଣି,
ସମାଜର ହିତେ ଉତ୍ସର୍ଗୀତଚିତ୍ତେ ବିତର ଜ୍ଞାନ ଆଲୋକ ପୁଣି ।
ଶିଶୁର ମୁଖେ ହସ ଉକୁଟାଇ ଦେବେଟି ତୁଣ୍ଡରେ ଭରଭାଷା,
ଛନ୍ଦମୟ କର କିଶୋର ଜୀବନ ଯୁବ ପ୍ରାଣେ ଆଣ ନୂଆ ଆଶା ।
ବାର୍ଦ୍ଧକ୍ୟ ନୋହୁ ବୋଝ କାହାପରେ ଜୀବନ ସଙ୍ଗୀତ ଶୁଣୁ ସେହି,
ସକଳ ଅନ୍ତରେ ମହାଆନନ୍ଦରେ ପ୍ରେମ ମନ୍ଦାକିନୀ ଦିଅ ବାହି ।
ମନନଶୀଳ ଏ ମାନବ ହୃଦୟେ ଜିଜ୍ଞାସା ତୁମେ ଦିଅ ଭରି,
ନୂତନ ତଥ୍ୟ, ନୂତନ କୌଶଳେ ଗଢ଼ନ୍ତୁ ଏ ଦେଶ ନୂଆ କରି ।
ସ୍ନେହ, ଶାନ୍ତି, ପ୍ରୀତି, ମୈତ୍ରୀ ଗୁଣରେ କରାଅ ସରବେ ଗରିୟାନ୍
ଏକତା ମନ୍ତ୍ରେ ଦୀକ୍ଷିତ କରାଅ ଗାଆନ୍ତୁ ମାତାର ଜୟଗାନ ।
ଏ ଦେଶର ପାଣି, ପବନ, ପଥରେ ଆଉ ଥରେ ଭରିଦିଅ ଭାଷା,
ପ୍ରାଚ୍ୟ ଗଗନେ ଉଇଁ ଆସୁପୁଣି ବର୍ଣ୍ଣାଢ଼୍ୟ ସେହି ପୂର୍ବ ଉଷା ।
ଆମେରେ ଶିକ୍ଷକ, ଆମେରେ ସ୍ରଷ୍ଟା କରିବାନି ଆଉ ଅଭିମାନ
ଆମ କରଣୀରେ ଫେରାଇ ଆଣିବା ଆମ ଏ ଦେଶର ସ୍ୱାଭିମାନ ।



# ଦହନ : ଏକ ଆହତ ପୌରୁଷର

● ନିରଞ୍ଜନ ସାହୁ

ଶିକ୍ଷକ ସେ ଯେ ଶିକ୍ଷକ—
ଦୂର କରେ ଯିଏ ଅସୀମ ପ୍ରାଣର, ଅସ୍ପୃତ ଯୁଗର ବ୍ୟଥା;
ଅନ୍ଧକାରର ଶୃଙ୍ଖଳ ଖୋଲି---
ଜଗତକୁ ଯିଏ ଭେଟିଦିଏ ଆଣି ନୂତନ ଆଲୋକ ଶିଖା ।
ଶାନ୍ତି, ସଂହତି, ମୈତ୍ରୀ, ପ୍ରୀତି ଅନ୍ତରେ ଯା'ର ଭରା,
ତାଙ୍କୁ କି ପାରିବ ଜଣି—
ସ୍ୱାର୍ଥାଂଧ କୃତ୍ରିମ କାୟା ଅବା ଅଜ୍ଞାନତାର ଜରା ?
ଭଣ୍ଡ ସାଧକ ସଜାଡ଼ୁଛି ବେଦୀ ଯଜ୍ଞର ଆୟୋଜନେ,
ଦ୍ୱବସର ଅନ୍ତରାଳେ—
ସନ୍ଧପୂଜା ଯେ କରୁଥାଏ ଅନୁକ୍ଷଣେ ।
ଆରେ ରେ ପାଗଳ !
ହସ ଲାଗେ ଜାଣି, ତୋ'ର ଏ ପ୍ରଗଲ୍‌ଭତା ।
ତୁ କି ପାରିବୁ ଏ ଜାତିକୁ ଦୁର୍ବଳ କରି
ପାରୁ ତ ଦୁର୍ବଳ କର;
ମେରୁଦଣ୍ଡ ଯା'ର ଭାଙ୍ଗି ପାରିନାହିଁ
ରଣଦୁର୍ମଦ ଆଲେକ୍‌ଜାଣ୍ଡାର ବୀର ।
ଗୁହାଁରେ ଜଗତ ଗୁହାଁ —
ହାତେ ଯା'ର ଗଢ଼ା ମଣିଷ ସମାଜ
କଏ ଆଜ ତା'ର ସାହା ?

ଦୁଃଖ, ଯନ୍ତ୍ରଣାର ସାହାରା ବୁକୁରେ,
ପ୍ରବଞ୍ଚନାର ଦରିଆ ମଝିରେ,
କିଏ ବା ଅଛି ତା' ଦୁଃଖରେ କହିବ ଆହା ?
ଫେରିଆସ ଆହେ ଏ ଜାତି ଜନକ,
ଦେଖିଯାଅ ତୁମ ହାତଗଢ଼ା ପରିବାର;
ଶିକ୍ଷକ ଏଠି ଦରମା ପାଏନା —
ମାସ ମାସକର ମେହନତ ପରେ ତା'ର ।
ବଢ଼ିଲା ଝିଅ ତା' ଘରେ ରହିଯାଏ—
ଢାଳ ଢାଳ ଆଖି ଲୁହ;
ଭବିଷ୍ୟତର ତା' ସନ୍ଧ୍ୟାତାରା ଯେ ପୁଅ—
ଇଣ୍ଟରଭିଉ ଦେବାକୁ ପଇସା ପାଏନା, କାହାକୁ କହିବ ଦୁଃଖ ?
ଜୀବନ ହୀନ ଜୀବନ ଧରି—
ତଥାପି ସେ ଆଜ ରଣଦୁର୍ମଦ, ଅଜେୟ ବିପ୍ଳବୀ ବୀର ।
ପଣ କରିଛି ସେ, ଏ ସମାଜ ପଟ୍ଟେ—ଖଞ୍ଜି ଦେବ ନୂଆ ପର ।
ଆସ କମ୍‌ରେଡ୍ ଆସ—
ଲହୁ ଲୁହ ଦେଇ ଗଢ଼ିଦେବା ଆମେ, ସମାଜ ଅତୁଳ ତୁଳ ।
ସ୍ନେହ ପାରିବାରେ ବୁଡ଼ ପକାଇ, ମମତା ବନ୍ଧନ ହୃଦୟେ ଧରି,
ପ୍ରୀତିର ଅଝାଳ ଟାଣି;
ବହ୍ନି ମଶାଲ ହାତରେ ଧରି,
ଦେଶ ଓ ଜାତିର ଉନ୍ନତି ପଥେ, ଶିକ୍ଷା, ଶିକ୍ଷକ, ଶିକ୍ଷାର୍ଥୀ ପାଇଁ
ନୂଆ ଜୀବନର, ନୂଆ ସମାଜର, ସନ୍ଦେଶ ଦେବା ଆଣି ।



## ● ଡକ୍ଟର ବାସୁଦେବ ଦାସ

ବିଶ୍ୱର ପ୍ରିୟ ସତାଅଣୀ
ଅନ୍ଧ ଶତାବ୍ଦୀର ବନ୍ଦ ଦରଜା
ଖୋଲି ଆସି ।

ତମର ପରଶେ ହରଷରେ
ସମୀର ଗାଇବ ସରସରେ
ଦଗ୍ଧ ଧରଣୀ ମୁଗ୍ଧ ହୋଇବ
ପୁଷ୍ପ ସ୍ନିଗ୍ଧ ସୁବାସରେ ।

ତପ୍ତ ପବଣ ଠେଲି
ସୁପ୍ତ ହୃଦୟେ ଗୁପ୍ତରେ ଦିଅ
ଜାଗୃତି ନିଆଁ ଜାଳି ।

ରଣ ଦୁନ୍ଦୁଭି ବନ୍ଦ ହୋଇନ
କାଇରୋଭିଏତ ଶାନ୍ତି ପାଇନ
ସାମ୍ରାଜ୍ୟବାଦୀ ମୁକ୍ତି ଦିଏନ
ନିର୍ବୋଧ ସେହି ବୋଧା ସରକାର
ମାନବିକତାର ଅର୍ଥ ବୁଝେନ
ଆଫ୍ରିକା ନିଗ୍ରୋ ବ୍ୟଗ୍ର ହୁଅଇ
ସ୍ୱାଧୀନତା ଲଗି ଜାଳି ବିଦ୍ରୋହ ବହ୍ନି ।

ବିଷ ବାରୁଦର ଧୂମ କୁଣ୍ଡଳି
ବିଶ୍ୱ ଅଙ୍ଗନେ ଯାଉଚରେ ଘାରି
ମାର୍କିନ ଜାତି ହାତଘାତି ହସେ

ମଣିଷ ଜୀବନ-ମରଣ ବେପାରି
ପୁଞ୍ଜିର ଦାସ ରେଗାନ୍ ଦଲାଲ
ତାରକା ଯୁଦ୍ଧ ଉଠେ ଉଦ୍‌ବେଳି

ପ୍ରାଣର ଭାଷାରେ ଭସି
ଆସି କହ ସତ୍ତାଅଣି ।

ଜୀର୍ଣ୍ଣ ପଞ୍ଜରା ତଳେ
ହୁତୁ ହୁତୁ ବହ୍ନି ଜଳେ

ପୁଞ୍ଜିବାଦର ଧ୍ୱଂସ ଉତ୍ସବ ହେଲେ
ଯୁଦ୍ଧ ବିରୋଧେ ଯୁଦ୍ଧ ମାନବ ତୋଳେ
ସର୍ବହରା କାରା ଶୃଙ୍ଖଳ ଫିଙ୍ଗି
ଉଠିବ ଦଳେ

ବଂଚିବା ତାର ଆଦିମ ଆଶା
କାବ୍ୟ କୋଣାର୍କ ତୋଳେ ।

ପୁଂଜିବାଦ ବିନାଶରେ ବନ୍ଧୁ ସକଳ ଦୁଃଖ ନାଶ
ଏଇ ମନ୍ତ୍ର ଉଚ୍ଚାରି ଆସ '୮୭ ଆସ
ବିଶ୍ୱର ନଅ ପ୍ରାସ ।



# ବିଶ୍ୱ ଗଗନେ ନିଶିଯାଉ

ଡ଼ ରତ୍ନାକର ଚାଇନି

କୋଣୁ ଅନୁକୋଣୁ ଆବାଜ ଶୁଭୁଛି ବିଶ୍ୱଶାନ୍ତି ଦରକାର,
ନଥାଁ ସବୁ ଯିଏ ଖେଳ ଖେଳୁଅଛି ସିଏ ବୁଢ଼େଁ ଆମ ସରକାର ।

Never Hiroshima···Never Nagasaki···Never···
Never···ଚିତ୍କାର
ଯୁଦ୍ଧ ପାଗଳ ଶୁଣେ ନାହିଁ କିଛି, ବାରୁଦରେ ଦିଏ ଉତ୍ତର !!

ଆଣବିକ ଅସ୍ତ୍ରେ ବଳୀୟାନ୍ ଦେଶ କରିବ ସଭିଙ୍କି ଅନୁଗତ,
ନଜର ଜବର ନଜେ ଖୋଲ ଗୃଲେ ବୁଝେନା କିଛି ତା' ହିତାହିତ ।

ଲୋଡ଼ା ବାସସ୍ଥାନ, ଖାଦ୍ୟ, ପୋଷାକ ବଞ୍ଚିବା ଆମେ ନାଯ୍ୟରେ—
ଯୁଦ୍ଧ ଚାହୁଁନା, ସହାବସ୍ଥାନ ଶାନ୍ତି ବିରାଜୁ ରାଜ୍ୟରେ ।

ଜାତିଜାତି ମଧ୍ୟେ ଲଗାଇ କଳହ ନେତା ସାଜୁଥାଏ ମଧ୍ୟସ୍ଥି,
ଛଳନାରେ ଛଳ ଭେଟ ଖଣ୍ଡିମାରେ ଧରି ଏଇ ହୀନ ପଦ୍ଧତି ।

ସାଂପ୍ରଦାୟିକ ବିଷ ବୁଣିଦେଇ ଗୃଲଗଲା ଗୋରା ସରକାର,
ଲିଭୁଛି କି ତାହା ଉଧିକାଯାଉଛି ଶୁଣୁଥିବେ ସବୁ କର୍ଣ୍ଣର ।

ଖଟିଖିଆ ଆଜ ମୁଣ୍ଡ ଆଉଁସେ ନ୍ୟାଯ୍ୟ ପାଉନି ସେ ସବୁ ଦେଇ,
ବିକ୍ଷୋଭ କରେ ରାଜ ରାସ୍ତାରେ ଗଣ ଚେତନାର ଆଶା ନେଇ ।

'ନବ ଉଦୟ'ର ଗର୍ଭୋଦୟରୁ ମିଳିବ କି ଖାସା ଜାଣିପୂତା ?
ଅବା ଭେଦଭାବ ବହ୍ନି ଜ୍ୱାଳାରେ ଅନାଥିନୀ ହେବ ଦେଶମାତା—

ଏକ ବଂଶର ଶତାବ୍ଦୀ ଆଡ଼କୁ ଛିଟିଙ୍ଗ୍ ଆଗେଇ ଯାଏ ଦେଶ,
ସଲାମୀ ଦେଇ ବ୍ୟାଞ୍ଚତା ନ ମିଳେ କରେ ଶିକ୍ଷକ ଅବଶୋଷ ।

ସବୁର ଶିଶୁଙ୍କୁ ଶିକ୍ଷା ମିଳେନା ଖାଲି ପେଟ, ପିଠି ନଙ୍ଗଳା,
'ନବୋଦୟ'ର ପାଖ ପାଠଶାଳା ଭିତର ବାହାର ଫୁଙ୍ଗୁଳା ।

ଜାଣିପୁ ସହିତ, ବିଶ୍ୱଶାନ୍ତି ପ୍ରତିଷ୍ଠିତ ହେବ କେଉଁପରି ?
ସାମାଜିକ ନ୍ୟାୟ ପାଇବାକୁ ଗୁହ ଶିକ୍ଷକ ଆଜି ଗୁଡ଼େ ହୁରି !

ମଣିଷ ତିଆରି କାରଖାନା ଆଜି ଅଛି ଅମଣିଷ ହସ୍ତରେ,
ଖିଆଲ ତାହାର ଶିକ୍ଷା ବିହାର ଗଡ଼ିବାଏ ମଦମତ୍ତରେ ।

କରାଣୀ ତିଆରି କରୁଥିଲା ଦିନେ ବଣିକ-ଶିକ୍ଷା-ପଦ୍ଧତି,
ସ୍ୱାଧୀନ ଦେଶରେ ମଣିଷ ପଣିଆ ହଜିନାଏ ଆଜି ଗଜମାତି ।

ଉନ୍ନତ ଚିନ୍ତା ଛୁଇଁବକ ମନ, ଆଉ ଓଳକ ଯା' ନାହିଁ ଗତି,
ଆବଶ୍ୟକ ମତେ ଅର୍ଥ ନାହିଁ ଯା, ପକେଟ କରୁଛି ଚତୁମାତ୍ର ।

ଦୁର୍ଭାଗିଆ ଏ ଦେଶପାଇଁ ଖାଲି ଅଳସ ବିଳାସୀ ଧନ୍ଦାହୀନ—
ନାଗରିକ ସୃଷ୍ଟି କରି ଗ୍ଲଳିବ କି, ଭବୀ ଯୁଦ୍ଧର ଆୟୋଜନ !

ତାରକା ଯୁଦ୍ଧ, କ୍ଷେପଣାସ୍ତ୍ରର ଶବ ଏଇଠାରେ ହେଉ ଦାହ,
ସଙ୍କୀର୍ଣ୍ଣତାର ପରିଧି ଲଂଘି, ବିଶ୍ୱ ଗଗନେ ମିଶିଯାଅ ।



# ସ୍ମୃତି ପଚିଶି ବର୍ଷର :
# ସ୍ୱପ୍ନ ଆଗାମୀ ଦିନର

● ପଦ୍ମଲୋଚନ ଦାଶ

ଗଣୁଁ ଗଣୁଁ ପଚିଶିଟି ବର୍ଷ ବିତିଗଲା
ଋତୁଚକ୍ର ଆବର୍ତ୍ତନ, ବିବର୍ତ୍ତନ ସୃଷ୍ଟି
ମହାନଦୀ କୂଳ ଉଛୁଳେଇ
କେତେ ଢେଉ କେତେ ପାଣି ବୋହି ହୋଇଗଲା ।

ଓଷ୍ଠାଧର ଅଧରପାଙ୍କେ
ରେଖି ରେଖି ଅମ୍ବରର ଅନୁପମ ଛଟା ବୁଣି
କେତେ ଶୁଭ୍ର ସଉରଭ ଯୋର ଯୋର ଲହଡ଼ି ଭାଂଗିଲା ।

ଏଇ କାଳପଥେ କେଉଁ ଏକ ପବିତ୍ର ଲଗ୍ନରେ
ସୂର୍ଯ୍ୟାସ୍ତର ରଂଗ ନେଇ ଓଷ୍ଠା ଯେବେ ଦେଖିଲା ସ୍ୱପ୍ନ
ତାରୁଣ୍ୟର ଲଳିକାରେ କୃଷ୍ଣଚୂଡ଼ା ହସନେଇ
ନୂଆ ଉଦୟଭୂମେ ବୁଣିଲା ସେ ପ୍ରୀତିର ମୂ ରୁଜ ।

ଯୌବନର ମଳୟ ବହିଲା
ଚିତ୍ତତଳେ କାମନାର ବିଚିତ୍ର ବର୍ତ୍ତିକା
ପତ୍ରପୂର୍ଣ୍ଣ ଲଜ୍ଜୁର ଅଂଗଳେ—
ଜାତି ଜାତି ସୁମନର ମହକ ଭରିଲା ।

ସ୍କଲଶିପ୍ ବସନ୍ତର ମିଠାକଥା ନବ୍ୟ ଅନୁଭୂତି
ପରିବ୍ୟାପ୍ତ ବିସ୍ତୀର୍ଣ୍ଣ ସହର
ହଳଦିଆ ସକାଳରେ ଜୀବନର ଅପୂର୍ବ ରାଗିଣୀ
କିଛି ସ୍ୱପ୍ନ କିଛି ବାସ୍ତବତା
କିଛି ପ୍ରାପ୍ତି କିଛିଟା ଜଡ଼ତା
ବିଜୟୀର ତୂର୍ଯ୍ୟନାଦେ କିଛିଟା ବି ଅଶ୍ରୁଳ କାହାଣୀ
ଆହା ! ଶନ୍ତ୍ରଲତା, ଚନ୍ଦ୍ରଲତା ଆମ୍ଭର ବିଳାପ
ଆଜି ବି ମୁଣ୍ଡକୋଡ଼େ ରାଜରାସ୍ତା ପରେ
ଟିକ୍ ମିକ୍ ଟ୍ରାଫିକ୍‌ର ସବୁଜ ଆଲୋରେ ।

ମାନବିକ ଅଧିକାର ମେହେନତି ମଣିଷର ଦାବୀ
ଜ୍ୟୋତିହୀନ ଆଖିତଳେ ବଂଚିବାର ସ୍ୱପ୍ନ
ସ୍ୱପ୍ନ ପୁଣି ପ୍ରଗତିର, ଅମୃତ ସ୍ୱାଦର
ହେଲେ ଗଣତନ୍ତ୍ର ସୌରଭରେ କାହାର ଏ ଦୁର୍ମଦ ହୁଂକାର !
ହୀନ ଆସ୍ଫାଳନ ପୁଣି—
"ବିନା ଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ ।"
ଅପେକ୍ଷାକର, ଅପେକ୍ଷାକର ଦୁର୍ଯ୍ୟୋଧନ
ଓସ୍ତାର କାଠ ଘୋଡ଼ା ପାଣିପିଇ ଉଜ୍ଜୀବିତ ହେଲଣି
ଅନିବାର୍ଯ୍ୟ ସଂଗ୍ରାମ ସେ ଆହ୍ୱାନ କରୁଛି
ଅନ୍ୟାୟର ପ୍ରତିରୋଧ—ଗଣତନ୍ତ୍ର ଚେତନାର ଶାଣିତ ସଂଗ୍ରାମ
ସଦ୍ୟସ୍ନାତା କିଶୋରୀର ସ୍ପର୍ଦ୍ଧିତ ଗ୍ରୀବାର
"ଅଭିମନ୍ୟୁ" ଶୋଣିତର ସ୍ରାବ କରୁଛି ।

ଗୁରୁ ଦିବସରେ ବାର୍ତ୍ତା, ବେତାରରେ ମନ୍ଦ୍ର ସିମ୍ଫୋନି
ଗୁରୁ—ସମାଜର ପ୍ରାଣକେନ୍ଦ୍ର, ଜାତି କର୍ଣ୍ଣଧାର
ବାଃ କି ସୁନ୍ଦର
କି ସୁନ୍ଦର ଛଳନାର ମାନପତ୍ର କୃତିତ୍ୱର ଅବ୍ୟକ୍ତ ସ୍ୱାକ୍ଷର
ମାଂସ ଝୋଳ ବିରିଆନି ଅଜୀର୍ଣ୍ଣ ହାଇରେ
ଚମତ୍କାର ନୂଆ ଶିକ୍ଷାନୀତିର ଆଓ୍ୱାଜ
ଭଂଗା କାନ୍ଥ ନୁଆଁଣିଆ ଛାତତଳେ—

ଜଟଗେଇ ମାଟଧେଇଙ୍କ ଶୂନ୍ୟଦୃଷ୍ଟି, କ୍ଷୁଧାର ଜ୍ୱାଳାରେ
ନବୋଦୟ ବିଦ୍ୟାଳୟ ଗଂଧ
ସ୍ୱପ୍ନରେ ଭରିଦିଏ କେଉଁ ଏକ ଶ୍ୱେତ ଜନ୍ମଜନ୍ମା ।

ସ୍ୱର୍ଗ ଆଉ କେତେଦୂର ?
କେତେଦୂର ରମ୍ଭା ଉର୍ବଶୀଙ୍କ କୋଳାହଳ—
ବୈକୁଣ୍ଠର ନୂତନ ସର୍ଜନା ??

ଆକାଶରେ କେତେଖରା ପୃଥିବୀରେ କେତେ ଯେ ଆଲୁଅ
ସମୁଦ୍ରରେ କେତେ ଉର୍ମି
ଆଖିର ମିଳମାତଲେ ଓଷ୍ଟାର ଅନେକ ସପନ
କେତେ ନୂଆ ଶିକ୍ଷାଚକ୍ର, କେତେ ବନ୍ୟା ବାତ୍ୟା ବରଷାରେ
ଆର୍ତ୍ତ ମାନବ ସେବା; କାହିଁ କେତେ ଆଲୋକର ସମୁଜ୍ଜ୍ୱଳ ପଥ
କେତେ କେତେ ସ୍ୱର୍ଣ୍ଣାଭଶିଶୁ-ଉତ୍ସବରେ—
କେ ତୋଳୁଛି କେ ତୋଳୁଛି କହ ?
ଓଷ୍ଟା କେବେ ଜୀବନର ସାଲସରେ ପ୍ରାଚୁର୍ଯ୍ୟ ଖୋଜେନା
ଖୋଜେନା ସେ ବଂଚିବାକୁ କ୍ଷେପଣାସ୍ତ୍ର ଧାତ୍ରୀର ଗର୍ଭରେ
ନିର୍ଲଜ ସ୍ପର୍ଦ୍ଧାରେ ଆଜ ଜରାସଂଧ ପଦ ଲେହନରେ ।

ଓଷ୍ଟା ଯେ ଏକ ଶାନ୍ତିର ଆବଦ୍ଧ ଅଧର ପୃଷ୍ଠରେ କରୁଣାର ପ୍ରୀତିଧାରା
ଓଷ୍ଟା ଯେ ଏକ ତ୍ୟାଗର ପ୍ରବାହ ମାନେନା କାହାର ବାଧା ଅର୍ଗଳକାରା
ଓଷ୍ଟା ଯେ ଏକ ଜ୍ୟୋତିର ଦୀପିକା କାହାରେ ଭରିଛି ଅମ୍ଳାନ ସଉରଭ
ଓଷ୍ଟା ଯେ ଏକ ପ୍ରଜ୍ଞାର ଲିପିକା ପ୍ରଗତି ପଥରେ ଜାତିର ସେ ଗଉରବ
ପ୍ରେମର ଦୀପାଳିଜାଳି
ମମତାର ମୂଲେ, ଶରଧାର ଝୁଲେ ନେବାରେ ତାକୁ ସଂଖୁଳ ।
ସ୍ୱାର୍ଥଲୁହେଁ ତ୍ୟାଗ ଆଉ ଶାନ୍ତିର ଗୀତିକା
ଅନ୍ୟାୟର ପ୍ରତିରୋଧ ଶ୍ରେୟଭିର ନଗ୍ନ ଲିପିକା
ଲେଖିଦିବା ଓଷ୍ଟାର ବିବସ୍ତ୍ର ତନୁରେ
ବିଖଣ୍ଡିତ ସମୟର ନିଃଶବ୍ଦ ପ୍ରହରେ
ଆମପାଇଁ ଆଗାମୀ ପ୍ରଭାତ
ଅପ୍ରମେୟର ଶକ୍ତି ଆଉ ଅନୁପମ କାନ୍ତି ନେଇ ହେଉ ପ୍ରତିଭାତ ।



# ଶାନ୍ତି-ମନ୍ତ୍ରଣା

● ହୃଷୀକେଶ ଆଚାର୍ଯ୍ୟ

ଯୁଦ୍ଧ ପ୍ରୟାସୀ ଆମେ ଯେତେଜଣ
ଶାନ୍ତି-ମନ୍ତ୍ରଣା କକ୍ଷେ,
'ରିହର୍‌ସାଲ୍' କରୁ ଶାନ୍ତି ଶ୍ଳୋଗାନ,
ଭିତରେ ଆମର ମସୁଧା ଭିନ୍ନ
ସାଇତି ରଖିଛୁ ଯେତେ ଅଭିମାନ,
ସ୍ୱାର୍ଥ-ପରତା ଲକ୍ଷ୍ୟେ ।

ଆମେ ନବୀନ, ଆମେ ଉଦ୍ଦାମ
ଆମ ଆଗେ ଆଜ କଳ୍ପନା ଅସୁମାରୀ ।

ଆମ ବିଜ୍ଞାନ, ଆମ ଦର୍ଶନ
ମନ ମଧ୍ୟେ କେମ୍ପା ଜଳ୍ପନା ଦିଏ ଭରି !
ଯୋଜନା ଆମର ସୀମାହୀନ ଆଜ
ସବୁଜିମା ଭରା ଖେତ
ସଭ୍ୟତାର ଶିଖର ପ୍ରଦେଶେ ବସି
ଘାଇ ହୋଇ ଆମେ, ଘାଇ ପାଇଁ ଖୋଳୁ ଗାତ ।

ବିଶ୍ୱ ଭ୍ରାତୃତ୍ୱ ଶ୍ଳୋଗାନ ଆମ ମୁଖେ,
ତ୍ୟାଗର ବାଣୀ ଶୁଣାଉ ଆଜ ଅନ୍ୟେ,
ବିଳାସ-ବ୍ୟସନେ ମସଗୁଲ୍ ରହି ଆମେ,
ତ୍ୟାଗ କରିଛୁ—ଶୀଳ, ଭଦ୍ରତା, ପୁଣ୍ୟେ !
ବାହାରେ ଦେଖାଉ ଭଦ୍ରାମି ଜାଲଆଁତି
ଭିତରଟା ଆମ କେତେ କଦର୍ଯ୍ୟ ସତେ !
ମାନବ-ବାଦର ଖୋଲପା ପିନ୍ଧି—
ଆମେ ଚାଲିଛୁ,
'ଦାନବ-ବାଦ'ର ପାପ ପଙ୍କିଳ ପଥେ ।

ଗୋପନେ ମନ୍ତ୍ର ଶୁଣିବ ବନ୍ଧୁ !
ବ୍ୟଥା-ବେଦନାର କାହାଣୀ ଅକଳନ,
ମଣିଷ ଆଜ ପ୍ରକୃତି ଜୟ କରି
ପ୍ରକୃତି ମୋହେ ସାଇତି ରଖିଛୁ—
ଖାଲି ବୃଥା ଅଭିମାନ ।

ହାତରେ ଆମ ଧ୍ୱଂସର ଗୁବକାଠି,
ମଣିଷ ହୋଇ ମଣିଷ ମୁହଁରେ
ଦେଇ ପାରୁନାହିଁ ଖଣ୍ଡିଏ ସୁଖିଲା ରୁଟି ।

(କାରଣ) ବଡ଼ ହେବାପାଇଁ ଅହରହ ଆମ ଚେଷ୍ଟା
ଅପରର କାଟି ଚୋଟି ।

ମାନବ-ବାଦର ପ୍ରଚାର ଆଜ
ମଠ-ମନ୍ଦିର, ମସ୍‌ଜିଦ୍ ପ୍ରାଙ୍ଗଣେ,
ଧର୍ମ ନାମରେ ହିଂସା ଆଚରି
ଆମେ ଚାଲିଛୁ ହଣା କଟା ଅଭିଯାନେ ।

(ଏଣେ) ଶାନ୍ତି-କପୋତ ଉଡ଼ାଇ ଆକାଶେ
(ତେଣେ) ମହାକାଶେ ଆଜ ବଜାଉ ଯୁଦ୍ଧ ଭେରୀ,
ଆମେ ଯେତେଅଛୁ ଖିଆଲି ସପନ ଖେଳ
'ବାଦଶାହି' ନିଶା ଆମକୁ ଦେଇଛି ଘାରି ।

ଆକାଶେ, ବତାଶେ ଉଡ଼ାଇ ଶାନ୍ତି-କେତନ,
ଆମ ପରିବାର-ସମାଜ-ରାଷ୍ଟ୍ରେ
କୋଳିତ ଦେଲୁଣି—
'ନୈରାଶ୍ୟ'ର ତାଜା ରକ୍ତ ।

ଆକାଶେ ଉଡ଼ଇ 'ଯନ୍ତ୍ରଣା'ର ମହା ଗୃଧ୍ର
ମେଲାଇ ପକ୍ଷ ତା'ର,
(ଏବେ) ଗୁଡ଼ ଆମେ ସକଳ ମନ୍ତ୍ରଣା କକ୍ଷ
ବାସ୍ତବ-ବାଦେ ହେବାକୁ ଆଗଭର ।



# କୁହ, ହେ ଶିକ୍ଷକ ସମାଜ !

● ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ

ପୁଣ୍ୟ ଏ ଭାରତ ଭୂମି
ପୁଣ୍ୟ ଉତ୍କଳ ଜନନୀ
ଯାର ଶିକ୍ଷା ସଂସ୍କୃତି ବ୍ୟବସ୍ଥା
ଯୁଗେ ଯୁଗେ ଟେକିଥିଲା ମଥା
ସୁମରିଲେ ସେହି କଥା
ଜାଗୁନାହିଁ ମନେ ବ୍ୟଥା ?
କୁହ, ହେ ଶିକ୍ଷକ ସମାଜ । ୧ ।

ସମ୍ବିଧାନ ଗଣତନ୍ତ୍ର
ରୂପାୟନ ମନ ତନ୍ତ୍ର
ଶିକ୍ଷା ଦାନେ ବ୍ୟବଧାନ ରଚି
ସମାଜବାଦ ଆମର ରୁଚି
ବିଧାନ ଦେଇଛନ୍ତି ରଚି
ଲାଗୁନାହିଁକି ଅରୁଚି ?
କୁହ, ହେ ଶିକ୍ଷକ ସମାଜ । ୨ ।

ପୁଞ୍ଜିପତି ଠାଉଠରେ
କଳାବଜାରୀ ବ୍ୟଭିଚାରୀ
ଶିକ୍ଷାବିକାଶ ମଶାଲ ଧରି
ଘୋଷନ୍ତି ବହୁତ ବାହାଦୁରି
ଜ୍ଞାନାଲୋକର ଉଦ୍ଭବ
ହେବକି ଏଥେ ସମ୍ଭବ ?
କୁହ, ହେ ଶିକ୍ଷକ ସମାଜ । ୩ ।

ଯେ ଦେଶେ ଶିକ୍ଷକ ମାନ,
ମନ ନହୁଏ ପ୍ରସନ୍ନ
ଖେକଲା ପେଟେ ଗୁଣ ମଳିନ
ଶ୍ରେଣୀଗୃହ ଅତି ମ୍ଳାନମାନ
ଉଚ୍ଚମାନ ଶିକ୍ଷାଦାନ
ନୁହେଁକି ଏ ଆସ୍ଫାଳନ ?
କୁହ, ହେ ଶିକ୍ଷକ ସମାଜ । ୪ ।

ଶିକ୍ଷା ପ୍ରସାର, ସଂସ୍କାର
ଆଳରେ ଶିକ୍ଷା ସଂହାର
ନୂତନ ଶିକ୍ଷାନୀତି ବିଧାନ
ସମାଜ-ବାଦର ଅବସାନ
ବେକାରି ହେବ ଦ୍ୱିଗୁଣ
ନୁହେଁ କି ଏ ନିଦାନ ?
କ୍ରୁଦ୍ଧ, ହେ ଶିକ୍ଷକ ସମାଜ । ୫ ।

ଶିକ୍ଷାନୀତି କଳୁଷିତ
ଶିକ୍ଷା ବ୍ୟୟ ସଙ୍କୁଚିତ
ଶିକ୍ଷକେ ସମସ୍ୟା ଜର୍ଜରିତ
ସରକାରଙ୍କର ଇଙ୍ଗିକୃତ
ଶିକ୍ଷା ହେଲେ ଧୂଳିସାତ
ହେବକି ଶିକ୍ଷକ ହିତ ?
କ୍ରୁଦ୍ଧ, ହେ ଶିକ୍ଷକ ସମାଜ ! । ୬ ।

ଶ୍ରେଣୀ କକ୍ଷ ଅତିକ୍ରମି
ଗ୍ରାମେ ଗ୍ରାମେ ଭ୍ରମି ଭ୍ରମି
ଜନମନେ ବିପ୍ଳବର ଶିଖା
ପ୍ରଜ୍ୱଳିତ କରିବାର ଦୀକ୍ଷା
ପ୍ରଦାନେ ହୋଇବା ରତ
ହେବନାହିଁ କି ଯୁକତ ?
କ୍ରୁଦ୍ଧ, ହେ ଶିକ୍ଷକ ସମାଜ ! ୭ ।

ଗ୍ଲାନି ସବୁ ଭେଦଭାବ
ଅବା ହୀନମନ୍ୟ ଭାବ
ଉତ୍ସର୍ଗିକୃତ ସଂକଳ୍ପ ନେଇ
ଐକ୍ୟ-ବଦ୍ଧ ସଂଗ୍ରାମ ଚଳାଇ
ଶିକ୍ଷା ସଙ୍କଟ ମୋଚନ
ହେବଟି ଶିକ୍ଷକ ପଣ ?
କ୍ରୁଦ୍ଧ, ହେ ଶିକ୍ଷକ ସମାଜ ! । ୮ ।



# ଶପଥ

ପର୍ଶୁରାମ ବିଶ୍ୱାଳ

ଶତାବ୍ଦୀର ଅନ୍ତିମ ପ୍ରହରେ ଶୁଭେ କର୍ଣ୍ଣେ ମୃଦୁ ଗୁଂଜରଣ
ନିଷ୍କପଟ ମାନବ ହୃଦୟ ବ୍ୟଥାତୁରେ ହୁଏ ଆନ୍ଦୋଳନ ।
ଅଳୀକ ଏ ପାର୍ଥିବ ସଂସାର ଅଳକାର ସ୍ୱପ୍ନ ଦେଖେ ଯହିଁ
"ଯୁଦ୍ଧ ଭୟ" ପ୍ରାଣେ ପ୍ରାଣେ, ସୁଖ ସ୍ୱପ୍ନ ଭଂଗ ହୁଏ ତହିଁ ।
ବୁଦ୍ଧିର ଘୋଡ଼ା ଦଉଡ଼େ ହୃଦୟର ନାମ ନାହିଁ ଲେଶ
ଦୁଃଖ ଲଗେ ମାନବତା କାହିଁଗଲା ସେନେହ ପୀୟୂଷ ।
ମାଡ଼ ହଜା ପକ୍ଷୀ ଆମେ ଦିଗ ହଜା ନାବିକର ସମ
ବୃଥାରେ ଘୁରୁଛୁ ସିନା ସ୍ଥାନ ନାହିଁ ନେବାକୁ ବିଶ୍ରାମ ।
ବ୍ୟକ୍ତି ସ୍ୱାର୍ଥେ ଅନ୍ଧ ହୋଇ ଜାତି ସ୍ୱାର୍ଥେ ଜଳାଜଂଳି ଦେଇ
ଭାଇ ଭାଗ ଖୋଜୁଅଛୁ, ନିର୍ବୋଧତା, ଶତ୍ରୁ ଆଶ୍ରା ନେଇ ।
ଧ୍ୱଂସ ସ୍ତୁପେ ଛିଡ଼ାହୋଇ କରନାହିଁ ମୃତ୍ୟୁକୁ ଆହ୍ୱାନ
ଜୟଚନ୍ଦ୍ର ସମ ହେବ ଅବଲମ୍ବେ, ଧରାରେ ବିଲୀନ ।
ମିଳନ ବଂଶୀର ସ୍ୱରେ ନିହିତ ଯେ ମଧୁର ଝଙ୍କାର
ଦୂରେ ଫିଙ୍ଗି ପ୍ରମତ୍ତ କଳସି ସେ ଅମୃତେ ହୁଅ ଭାଗୀଦାର ।
ଶାଶ୍ୱତର ହୁଅ ହେ ପୂଜାରୀ କ୍ଷଣସ୍ଥାୟୀ ଚିନ୍ତା କରି ଦୂର
ଏକତାରେ ରକ୍ତର ବଂଧନ ହୁଏ ସିନା ଦୃଢ଼ରୁଁ ଦୃଢ଼ତର ।
ହେ ବଂଧୁ ଶିକ୍ଷକ ଭାଇ ଦେଖ ଥରେ ଜ୍ଞାନ ନେତ୍ର ଫେଇ
ସ୍ରଷ୍ଟା ବିନା କାହିଁ କେବେ ଏ ସୃଷ୍ଟିର ଗତ୍ୟନ୍ତର ନାହିଁ ।
ସୃଷ୍ଟି ଆମେ କରିବୁ ମଣିଷ ସଚଳ ଯା' ଜୀବନର ଗତି
ଉଚ୍ଚମନା ହୋଇବ ଅବଶ୍ୟ ସଂକୀର୍ଣ୍ଣତା ହୃଦୁଁ କରି ଇତି ।
ଅସ୍ପୃଶ୍ୟତା ବିରୁଦ୍ଧେ ସଂଗ୍ରାମ ଚଳାଇବ ସେ ଜୀବନ ସାରା
ଶାନ୍ତି, ମୈତ୍ରୀ, ପ୍ରୀତି ଦୂତ ଭାବେ ହେବ ସର୍ବ ନୟନର ତାରା ।
ସାମ୍ପ୍ରଦାୟିକତା ଭାବ ଭୁଲିଯିବ ଉଦାରତା ପାଇଁ
ମାଟିର ମମତା ଲାଗି ଅଗ୍ନି ଗର୍ଭେ ପଶିବ ସେ ଡେଇଁ ।
ଯାହା ହେବ କୁସୁମିତ ପାଇ ସ୍ପର୍ଶ ଆତ୍ମ ନିର୍ଭରତା
ଲାସ୍ୟମୟୀ ଭାରତ ଜନନୀ ଦେଖିବ ତା' ଉଗ୍ର ଜାଶ୍ରୟୂତା ।
କରିବା ଶପଥ ଆସ ହେ ବଂଧୁ ଏ ମଧୁର ମିଳନେ
ଦ୍ରୋଣ ଜାତି ହସ୍ତରେ କାର୍ମୁକ ଯଥାକାଳେ ସମର ଅଙ୍ଗନେ ।

# ଏଇ ଜଗନ୍ନାଥର ଦେଶେ

● ମାୟାଧର ରଥ

ଏଇ ଜଗନ୍ନାଥର ଦେଶେ, ଏଇ ବଦ୍ରୀନାଥର ଦେଶେ
ଏଇ ରାମନାଥର ଦେଶେ, ଏଇ ଦ୍ୱାରକାନାଥର ଦେଶେ । ପଦ ।

ପରମାତ୍ମାର ସନ୍ତାନ ମୁଁ
ଦେଖିଛି ଅନେକ ସ୍ୱପ୍ନ
ଆତ୍ମ ବିଶ୍ୱାସରେ ଗାଇଛି ଗୀତ
ମାନବ ପ୍ରେମରେ ଯାଇଛି ଦ୍ରବି
ମୁକ୍ତି ମଶାଲ ଜଳାଇ ଦେଇଛି ଦିଗ ଦିଗନ୍ତେ ପ୍ରାଣର ହର୍ଷେ । ୧ ।

ବିହଙ୍ଗମ ହୋଇ ରୋଧିଛି ପଥ
ଚୌର୍ଯ୍ୟ ବୃତ୍ତିର କରିଛି ବାଧ
ମହାକାଳରୂପି ମର୍କଟ ହୋଇ
ଜଳାଇ ଦେଇଛି ଗର୍ବିତର ସେ ସ୍ୱର୍ଣ୍ଣ ଲଙ୍କା
ଅତ୍ୟାଚାରୀର ଅନ୍ୟାୟର ମୁଁ ପଥ ରୋଧିଅଛି ଆର୍ଯ୍ୟ ଦେଶେ । ୨ ।

ମାନବ ରୂପରେ କରିଛି ପ୍ରେମ
ବଂଶୀ ଧାରୀର ଗାଇଛି ନାମ
କଂସ ବିରୁଦ୍ଧେ ଉଡ଼ାଇ ଧ୍ୱଜା
ଉଗ୍ରସେନର କରିଛି ପୂଜା
ଚିର ଶାନ୍ତିର ଆବାହନ ଗୀତି ଗାଇଛି ଶେଷେ । ୩ ।

ଅହଂ ବାଦର କରିଛି ଘୃଣା
କୁରୁ ସଭାତଳେ ନାରୀ ଧର୍ଷଣ
ଶତ ବିଦ୍ରୋହ ସୃଷ୍ଟି କରିଛି ମନେ
ହୃଦ ମନ୍ଦିରେ ବସାଇ କୃଷ୍ଣ
କୁରୁ ବଂଶର ବିନାଶନ ପାଇଁ ଉଦ୍‌ଗ୍ରୀବ ହୋଇ ରହିଁଛି ହର୍ଷେ । ୪ ।

ବୁଦ୍ଧିର ଆତ୍ମା ଶିହରିଉଠୁ ଯେବେ
ପଶୁ ହତ୍ୟାର ନିର୍ମମ ଲୀଳା ଦେଖି
ବୋଧିଦ୍ରୁମ ତଳୁ ଆହ୍ୱାନ ଦେଇଛି
ବିଶ୍ୱ ଉଠିଛି ଜାଗି
ସେଇ ସଂଘରେ, ସେଇ ଧର୍ମରେ ଶରଣ ଯାଇଛି ଶେଷେ । ୫ ।

ନାନକ, କବୀର, ଜୀନ, ଚୈତନ୍ୟ
ପରଂବ୍ରହ୍ମର ସନ୍ତାନ ଗଣ
ବିଶ୍ୱ ଉଦ୍ଧାର ପାଇଁ
ଯେଉଁ ମନ୍ତ୍ର ଗଲେ ଗାଇ
କଣ୍ଠ ମିଳାଇ "ହରେ ରାମ କୃଷ୍ଣ" ଗାଇଛି ତା ସାଥେ
ମୁକ୍ତି ପୀୟୂଷ ଆଶେ । ୬ ।

ଗାନ୍ଧି ଆସିଛି ସବୁହରାର ସାଥୀ
ଗୋରା ଶାସନର ଦମ୍ଭ ନେବାକୁ ଲୁଟି
କାଟି କୁଟି ପଛେ ଚାଲିଛି
ମୁକ୍ତି ପାଇଁ ମୁଁ ଲଢ଼ିଛି
ବିନା ହିଂସାରେ ବିନା ରକ୍ତରେ ମୁକ୍ତି ପାଇବା ଦେଖାଇ
ଦେଇଛି ବିଶ୍ୱେ । ୭ ।

ହିରୋସିମା ମୋର ଚେତନାର ଦ୍ୱାର
ନାଗାସାକି ମୋର ଚିନ୍ତାର ସ୍ୱର
ଶାନ୍ତି ପାଇଁ ମୁଁ ଆବାହନ ଗୀତ
ଅବିରତ ଗାଇ ଚାଲିବି
ଆଶ୍ୱାସି ଯିବି ଶିହରୁଛି ନିଏ ଅଣୁ ପରମାଣୁ ମାରକାୟୁଧ ତ୍ରାସେ । ୮ ।

ବର୍ଣ୍ଣର ଭେଦ ଭୁଲିବି
ଦଳିତର ପାଇଁ ପତିତର ପାଇଁ
ମମତାର ନୀଡ଼ ରଚିବି
ପରମାତ୍ମାର କମନୀୟ ସୃଷ୍ଟି
ଧ୍ୱଂସ ହେବାକୁ ଦେବିନାହିଁ କେବେ ଦେବିନାହିଁ
ପ୍ରଚାର କରିବି ବିଶ୍ୱ ଦୁଆରେ ଜୀବାତ୍ମାର ସୁଖ ସନ୍ତୋଷ ଆଶେ । ୯ ।

# ମୋ କଳ୍ପନାର ରାତି

ପଦ୍ମନାଭ ନାୟକ

ବୁଦ୍‌ବୁଦ୍ ଏଇ କବିତା ରାତିର କୋଳେ
ଟେଇଁ ଉଠ ମୋର ଆହତ କବିତ୍ୱ
ଜୀବନ ଘାଟୀର ତଳେ
ମହା ଜୀବନର ବନ୍ଦନା ଗାଇ ଗାଇ
ଅନୁରଣି ଉଠ ଅବିଶ୍ୱାସର ମୂର୍ଚ୍ଛାରେ ପାଦ ଦେଇ ।

ଏଠି, ପୁରାଣର ରକ୍ତ ପରମାଣୁ ଟେକେ
ଜହର ବର୍ଷି ଫଣା
କ୍ଲାନ୍ତ ଆଖିର ଅସ୍ତ ନାଳରେ
ବେଦନା ବାଡ଼ି ଗଣା ।

ମାଗି ହେଉ ନାହିଁ ଅକାଳ ସକାଳ
ଅଂଧ କାରର ମଜା
ଖୋଜି ହେଉ ନାହିଁ ଆତୁରେ କାତରେ
ଅସ୍ପୃତ, ଅଖୋଜା ଖୋଜା ।

ଆଜ, ନଷ୍ଟ ହୋଇଛି ନର୍ଭର ମାଟି
ଭ୍ରଷ୍ଟ ହୋଇଛି ଧରା
ଧରା ନୁହେଁ ଏତ ଶେଷ ଅସ୍ଥିକର
ଯନ୍ତ୍ରଣା ମୟ କାରା ।

ପଶୁ ପକ୍ଷୀର ଧାର୍ଣ୍ଣ ବସୁଧା
ଭ୍ରଷ୍ଟ ପୁରୁଷାକାର
ନିଷ୍ଠୁର ଏଇ ଅପବାଦେ ପ୍ରାଣ
ଅବଶାଦ ଜର୍ଜର ।

ଆଖି ମେଲି ଚାହାଁ ମୋ ପ୍ରିୟ କବିତ୍ୱ
ଏଇ ମୋ କବିତା ଗୀତ
ଏଇ ମୋ ସାଧନା ମହା ମନ୍ତର
ସ୍ନେହାନୁଭୂତି ଓ ପ୍ରୀତି ।

ଏଇ ମୋ ନିଶ୍ୱ-ବିଶ୍ୱ ପଥର ସଖା
ଏଇ ଲଗ୍ନ ମୋ ଶେଷ ସମ୍ବେଗ
ଶାନ୍ତ ମୟୂଖ ମଖା ।

ଯେତେ ଚିତ୍ରକର ସ୍ନିଗ୍ଧ ସତେଜ
ସ୍ୱପ୍ନର ବନ ବୀଥି
ଯେତେ ଆହ୍ଲାଦ ବ୍ୟଥିତ ପ୍ରାଣର
କଣ୍ଟକ ପରିଣତି ।

ଯେତେ ଭାବନା ବା ଦୁର୍ଭାବନା ମୋ
ଏଇ ପଥେ ନିତି ଫେରେ
ଏଇ ପଥେ ବସି ସ୍ରଷ୍ଟା ମୁଁ ଜବ
ନୂତନ ସୃଷ୍ଟି ସ୍ୱରେ ।

ଦେଖେ ଆଖି ଆଗେ ଅସମାନତାର
ଗଣ୍ଡ ମାଳକୁ ମାଳ
ଭିଡ଼ ମୋଡ଼ ଉଠେ ଭ୍ରାନ୍ତିର ଶତ
ଶାବ୍ଦିକ ହିଲ୍ଲୋଳ ।

ଶାନ୍ତି ନାମରେ ହିଂସାର କାରସାଦି,
ମୈତ୍ରୀ ନାମରେ ଧପ୍ପାବାଜୀର
କଳଙ୍କିତ ବୁନିଆଦି ।

କ୍ରୂର ଶୋଷଣର ଆଗ ପଛ ଦ୍ୱାର
ଦେଖୁଛି ମୁକ୍ତ ଏଠି
ଭାଷଣରେ କେତେ ଶ୍ରେଷ୍ଠ ହେଉ ଆମେ
ଜାତିର ସ୍ପର୍ଦ୍ଧା କାଟି ।

ନିତି ପ୍ରତିବାଦ ଲାଗି ଉଠିଯାଏ ମନ
ମୁକ୍ତି ନାମରେ ମସ୍ତ ହେବାକୁ
ଆମେକି ହେଉନା ଧାଖା··· ?

ଆମେ ଧାଖା ହେଉ ମୁକ୍ତିର ପାଇଁ
ସ୍ୱାର୍ଥରେ ମାନ ହାର୍
ଛେଣ୍ଡୁ ଜୀବନଟା ମୁକ୍ତି ବନ୍ଧନ
ନିର୍ଲଜ, ହାହାକାର ।

ପଥ ନାମେ ଖାଲି ବିପଥର ହେଉ୍ ଫେର୍
ପାଶବିକତାର ନଗ୍ନ ଲାଲସ୍
ଆମେ ତାର ସାହୁକାର ।

ପେଟ କାଟି ଯିଏ ଦେଇ ନଜାଣିଛୁ
ସିଏ କି ବୁଝିବ ମନ···
କେଉଁ ଅଧିକାରେ ମଣିଷ ଜାତିର
ବଢ଼ାଇବ ମାନ··· ?

କେଉଁ ସାହସରେ କହିବ ବିଶ୍ୱେ,
ଶାନ୍ତିର ଉଡ଼ୁ ବାନା
ମଣିଷର ହେଉ ଜୟଯାତ୍ରା ଏଠି
ରହୁ, ସୃଷ୍ଟିର ପରଓ୍ୱାନା ।

ଆସ ଆସ ମୋର ସୃଷ୍ଟି କଳାର
କାବ୍ୟ କୁଂଜ ଦୂତ
ଏଇ କଳଙ୍କିତ କାଳେ କରିବି
ନିର୍ମମ ପଦାଘାତ ।

ଆସ ମୋ ଭଗ୍ନ ଦୁନିଆ ସମ୍ରାଟ
ଏଇ ମୋ କବିତା ସ୍ରୋତରେ ଉଠିଛି
ପ୍ରତିବାଦ ଶବ୍ଦ ଥାଟ ।



# ଚରୈବେତି, ଚରୈବେତି

● ପ୍ରଫୁଲ୍ଲ କୁମାର ଦାସ

ଚରୈବେତି,
ଚରୈବେତି
ମୋ ଚଇତି ଘୋଡ଼ା ।

ଆଗରେ ତୋ ଦୁର୍ଗମ ପାହାଡ଼
ଆରପଟେ ଗୁଳିଗୋଳା ଗୁଳିଛୁରେ ମାଡ଼ ।

ଆକାଶୁ ବର୍ଷୁଛି ଅଗ୍ନି
ଜଟାୟୁର ଡେଣା ଭାଙ୍ଗିଯାଏ
ହତାଶାରେ ରକ୍ତ ପାଣି ଫାଟେ
ଗୁଳି ଗୁଳି କ୍ଲାନ୍ତ ହୋଇଯାଏ ।

ଚରୈବେତି
ଚରୈବେତି
ମୋ ଚଇତି ଘୋଡ଼ା ।

ଗୁରୁଆଡ଼ ଶୂନ୍‌ଶାନ୍ ବହଳ ଅନ୍ଧାର
ମୋ କାନରେ ଶୁଭୁଅଛି ବିପ୍ଳବ ରାଗିଣୀ
ଆଗାମୀର ଲାଲ ସୂର୍ଯ୍ୟ ମୁକ୍ତି ପାଇଁ କାନ୍ଦେ
ବୁକୁତଳେ ଖୋଜୁଛି ସେ ନୂତନ ଧରଣୀ ।

× × × ×

ମୋ ଘୋଡ଼ା ଶୁଣୁଛି ବସି ବିପ୍ଳବ ରାଗିଣୀ
ଟାପୁ ଶବ୍ଦେ ତୋଳୁଛି ସେ ଫହତ ଝଙ୍କାର
ଚରୈବେତି, ଚରୈବେତି ହାଏ ହେ ୍ଷା ରବ
ଖୋଜୁଛି ସେ ଶୁଭବେଳା ଆଗାମୀ ଦିନର ।



# ପୂର୍ବ ରଂଗ

● କପିଳ ଚରଣ ସାମଲ

ସେମାନେ ଆମ ମଥାରେ ଝୋଟି ଲାଟି ଦେଲେ
ଏବଂ ଧଳା ଚଦରରେ ନିଜ ଦେହକୁ ଢାଙ୍କିଲେ
ଦଳିତ, ସ୍ଖଳିତ, ଶୋଷିତ ଓ ନିଷ୍ପେଶିତ
ଏ ମାଟି ରଙ୍ଗମଞ୍ଚରେ ମୂକ ଅଭିନେତା ସେତେ
ସତେ କଣ ମନ୍ତ୍ରମୁଗ୍ଧ ହେଲେ ?

ଶତାବ୍ଦୀ ସମାଜର ନମାଜ ପଢ଼ିଲେ ଏବଂ
ଅନାଗତ ଭବିଷ୍ୟର ଭ୍ରୂଣ ହତ୍ୟା କଲେ ?
ଭବିଷ୍ୟ ମୂକ ଶିଖେ ଷୋଳ ସହସ୍ର ଆର୍ଯ୍ୟ ଋଷି
ଓଁକାର ଉଦ୍‌ଗାତା ଏବଂ ସମାଜ ନିର୍ମାତା
ରାବଣର ଦଶ ମୁଖ, ବିଂଶ ଭୁଜ
ଏବଂ ଧ୍ୱଂଶ ମାରଣାସ୍ତ୍ର ଦେଖି ବିଚଳିତ ନଥିଲେ
କିନ୍ତୁ କିଆଁ ମୂକ ହୋଇଗଲେ ? ରକ୍ତ ଦାନ କଲେ ?
ତା ହାତରେ ବ୍ରହ୍ମାଦତ୍ତ ମୃତ୍ୟୁ ବାଣ ଦେଖି
ସତେ କି'ଣ ପ୍ରମାଦ ଗଣିଲେ ?
କି ଅଥବା ତା ଭାଗ୍ୟର ଆକାଶରେ
ଅପରାହ୍ଣର ସୂର୍ଯ୍ୟ ଦେଖି
ଆମପାଇଁ ଗ୍ରୀନ୍‌ଉଇଚ୍‌ର ସମୟ ଖୋଜିଲେ ?
ଆମ ଆଖିଆଗେ ଇଏ କଣ ଯାଦୁକରିଆ ଛାଇ ?
ଆସୁଛି ବ୍ରାହ୍ମ ମୁହୂର୍ତ୍ତ ବ୍ରହ୍ମମୟ, ଚଳଚଞ୍ଚଳ ପରି
ଆମ ଆକାଶୁଁ ଝରିବ ଆଲୋକର ଧାର ?

ଆସ ବନ୍ଧୁ ଯିବା,
ଜୀବନ ଖୋଲରେ ପରଂବ୍ରହ୍ମ ବାବାଙ୍କୁ ଭେଟିବା ।
ବହୁରୂପ ମୋ ଖୋଲ ଦେଇ,
କେତେ ଦ୍ୱୀପ ଖାଲ ଦେଇ ତ୍ରିବେଣୀର ଧାର
ସମଦୃଷ୍ଟି, ସମକୃଷ୍ଟି ପାଇଁ ସୃଷ୍ଟି କର ସମ ଭୂମି
ସୁଖ ଦୁଃଖ ହର୍ଷ ବିଷାଦର
ସାମ୍ୟ ମୈତ୍ରୀ ଶାନ୍ତି ଓ ଧୃତିର
ଯା ବକ୍ଷେ ଉଡ଼ୁଛି ଆମ ଜୀବନର ପାର
ସେହି ପଥେ ଯିବା
ବାବାଙ୍କୁ ଦର୍ଶନ କରି ଏ ପ୍ରଶ୍ନ କରିବା
"କୁହ ପରଂବ୍ରହ୍ମ;
ପିଣ୍ଡ ଯଦି ବ୍ରହ୍ମାଣ୍ଡର ଅନୁକୃତି
ଷଡ଼ଚକ୍ର, ଭୂଃ ଭୁବଃ ସ୍ୱଃ ମହଃ ଜନଃ ଏବଂ ତପର ପ୍ରତୀକ
ଷଡ଼ଦେବ ଷଡ଼ ଦେବତାଙ୍କ ପବିତ୍ର ଆସ୍ଥାନ
କେଉଁ ଚକ୍ରରେ ଆମର ଦେବତା ନାହାନ୍ତି ?
ଯାହାପାଇଁ ହିନ୍ଦୁସ୍ଥାନ ହେଲେ ବି ସ୍ୱାଧୀନ
ଆଇନର ଆଇନାରେ ସମ ଭାବାପନ୍ନ
ସୃଷ୍ଟି ହୋଇ ରହିଲେ ପୁଣି ଗୋଟି ଗୋଟି ଜାତି
ଶିକ୍ଷା କ୍ଷେତ୍ରେ ମଧ୍ୟ ସବର୍ଣ୍ଣ ଓ ଅସବର୍ଣ୍ଣ ଦୁଇ ଦୁଇ ପାଟି
କହିବା ପୁଣି "ହେ ଚିନ୍ମୟ,
'ଯୋଗ୍ୟ ଭୋଗ୍ୟା ବସୁନ୍ଧରା'
ଇଏ ଯଦି ଯୁଗାନ୍ତର ଚିରନ୍ତନ ବାଣୀ
ଯୋଗ୍ୟତାର ପ୍ରତିଲିପି ସତ୍ୟ ଯଦି ଜୀବନ କାହାଣୀ
କେଉଁ ଯୋଗ୍ୟତାର ଅଭାବରେ
ଆଜିମଧ୍ୟ ଆମପାଇଁ ଇଂରେଜ ଆଇନ୍ ?

ଆହେ ଜଗନ୍ନାଥ,
କେଉଁକାଳେ ଏଦେଶ ଶାସନ କଲେ
କଂସ ରାବଣ ହିରଣ୍ୟ ଜରାସନ୍ଧ ଥିଲେ
ସେମାନେତ ତୁମ ନବ ଅବତାରରେ ଗଲେ
ଆଜ କିନ୍ତୁ ତୁମ ଧର୍ମ ସଂସ୍ଥାପିତ ଏ ମାଟିକୁ ଆସନ୍ତି କପଟ ?
ତୁମ ଆନନ୍ଦ ବଜାରେ ଜନତାର ରସଦକୁ ଗ୍ରାସନ୍ତି କପଟ ?
ତୁମ ଏହି ପୁଣ୍ୟ ଭୂମି ସଙ୍ଗେ କିଣ ରୂପାନ୍ତରେ ହେଲା
ତ୍ରେକେନ୍ସବର୍ଗ ଜଙ୍ଗଲ ଯହିଁ ଚାଲେ ଶୁଭ୍ର ନାଗ ଲୀଳା ?
ସେମାନେ କି କଂସ ରାବଣ ନୁହନ୍ତି, ଶୋଷକ ତକ୍ଷକ ?
ଭକ୍ଷକ ଯେ ସାଜିଛନ୍ତି ଆଜ ତୁମ ପୁଣ୍ୟ ଭୂମିର ରକ୍ଷକ ?

ତେଣୁ ଆଜ ଏତେ ବିଷଧର, ହୋଇ ମାଳ ମାଳ
ଖେଳୁଛନ୍ତି ଆମ ଚତୁର୍ଦ୍ଦିଗେ କରି ଫୁଃ ଫୁକାର ?
ଆଜ ମଧ୍ୟ ତୁମେ ଯଦି ଆମ ଡାକ ନ ଶୁଣିବ
ଆଜ ମଧ୍ୟ ତୁମେ ଯଦି ଆମ କଥା ନ ବୁଝିବ
ଆମେ ମନୁ ପୁତ୍ର, ଜନ୍ମେଜୟ
ଏକେ ଏକେ ମହା ପୁରଂଜୟ
ଆମ ପିତୃ ଭ୍ରାତୃହନ୍ତା ଭାଗ୍ୟାକାଶ ଧୂମକେତୁ
ଏ ନାଗ କୁଳର,
ସବଂଶ ବିଧାନ ପାଇଁ ହୋଇ ଏକ ମେଳ
ବିଶ୍ୱବ୍ୟାପି ନାଗଯଜ୍ଞ ଆରମ୍ଭ କରିବୁ
ଦିଗେ ଦିଗେ ଆକାଶ ସ୍ପର୍ଶି ଅନଳ ଜାଳିବୁ ।
ଭୂ-ମର୍ମ ଭେଦି ଉଠିବ ପୁରୋଧାଂକ ମନ୍ତ୍ର
ଏକ ଏକ ସର୍ପ ନାମ ଧରି ସ୍ରୁବ ତୋଳି ପକାଇବେ ଘୃତ ।
ଅନ୍ତରୀକ୍ଷରୁ ଖସିବେ ବେସୁମାର ଫଣୀ
ଅଗ୍ନିରେ ପଡ଼ି ଫୁଟିବ ଗୋଟି ଗୋଟି ମଣି

ନାଗରାଜ ପ୍ରମାଦ ଗଣିବେ,
କେତେଦିନ, ଆଉ କେତେଦିନ ସେ ତକ୍ଷକ
ଇନ୍ଦ୍ରଙ୍କ ଆସନ ତଳେ ସୁରକ୍ଷିତ ହେବେ ?
ପୁରୋଧାଂକ ମନ୍ତ୍ର ଶକ୍ତି,
ଓଁକାର ନାଦର ବଳ
ଅଯୁତସେ ଚୁମ୍ବକପରି ଆକର୍ଷି ଟାଣିବ
ସେତେବେଳେ ସେ ତକ୍ଷକ
ଏ ତାପସ କୁଳମଧ୍ୟ ଶକ୍ତିକୁ ବୁଝିବ ।
ହୁଏତ ଆସ୍ତିକ କେଉଁ ତକ୍ଷକର ରକ୍ଷକ ସାଜବେ
ଅପୂର୍ଣ୍ଣ ରଖିବାପାଇଁ ଆମ ନାଗ ଯଜ୍ଞ
କିନ୍ତୁ ପରଂବ୍ରହ୍ମ
ସତ୍ୟ ଯଦି ତୁମେ ସ୍ରଷ୍ଟା, ସତ୍ୟ ତୁମ ସୃଷ୍ଟି, ଧର୍ମେ ଆତଜାତ
ଆମ ନାଗ ଯଜ୍ଞ କେବେ ଅପୂର୍ଣ୍ଣ ନୋହିବ
ଅଯୁତ ଅଯୁତ ଆର୍ଯ୍ୟ ଋଷିଙ୍କର ଆଖିଲୁହ ଧମନୀର ଲହୁ
ବେଦମନ୍ତ୍ର ହୋଇ
ରାବଣର କଳସୀରେ ମନ୍ଦୋଦରୀ ଗର୍ଭେ
ଜନକ ଲଙ୍ଗଳ ମୁନେ ସୀତା ନାମ ବହି
ରାମରାଜ୍ୟ ସ୍ରଷ୍ଟା ଶ୍ରୀରାମଚନ୍ଦ୍ରଙ୍କୁ ଏ ମାଟିକୁ ଓହ୍ଲାଇ ଆଣିବ ଯେବେ
ଛଦ୍ମ ରାମ କାମଧାରୀ ତକ୍ଷକର ନିର୍ମୋକ କାଢ଼ିବ
ସେତେବେଳେ
ଆମ ମଥା ଝୋଟି ତୁମ ଚିହ୍ନ ତିଳକ ହୋଇବ ।



# ଶାନ୍ତି, ସଂହତି ବନାମ ଶିକ୍ଷକ

❀ ପ୍ରଫୁଲ୍ଲ କୁମାର ଦାସ

( ୧ )

ବିଶ୍ୱ ଚେତନା ବର୍ଣ୍ଣ ବନ୍ଧରେ ! ବାର୍ତ୍ତାବହ !
ବିବର୍ଣ୍ଣ ପୃଥିବୀ ବିଷର୍ଣ୍ଣେ ଜଳୁଛି
କାହିଁକି କହ ?
ବନ୍ଧୁ, ବିଜୁଳି ଆକାଶେ ଚୋହର ଅନ୍ଦନ ଝଡ଼
ମନରେ କୋହ ।

( ୨ )

କନକ କିରଣ ଝଲସୁ ନାହିଁରେ ଅନ୍ତରେ ଚୋର
ଶତାବ୍ଦୀ ଡାକୁଛି ଜୀର୍ଣ୍ଣ ଦୁଆରେ
ଶୁଣରେ ଥରେ—
ବୁଦ୍ଧ ବେଦନା, କ୍ଳିଷ୍ଟ ପୃଥିବୀ କାନ୍ଦୁଛି ବସି
ଅସହାୟରେ ।

× × × × ×

ଗଣତନ୍ତ୍ର ଦେଶେ ବିଭେଦବାଦର ଶାସନ ଏଠି
ଶିକ୍ଷକ ପଢ଼ାଏ ସମ୍ବିଧାନର ନିଗୂଢ଼ ତଥ୍ୟ
ବାଣୀ ମନ୍ଦିରେ
ପୁଞ୍ଜିବାଦର ଛଦ୍ମଗୁମ୍ଫାତଳେ ଆମର ସ୍ଥିତି
ହତାଶା ଘରେ
ମଣିଷ ଦେଖୁଛି ଶାନ୍ତି, ମୈତ୍ରୀର ଆଲୋକ ଲଭେ
ଜାତି, ବର୍ଣ୍ଣ, ଭାଷା, ବିଭେଦ ଉପରେ ଟେକୁଛି ମୁଣ୍ଡ
ସ୍ୱାର୍ଥର ଯୁଦ୍ଧ
ବଞ୍ଚନା ଭିତରେ ମରେ କିଏ ପୁଣି ହତାଶା ମନେ
ତା' ପଥ ରୋଧ ।

× × × × ×

ଝଡ଼ ଶେଷ ହେବ, ଆଲୋକ ଆସିବ ତିମିର ତଳୁ
ସବୁଜ କଣ୍ଠରେ ଗୁମୁରି ଉଠିବ ସଂହତି ସ୍ୱନ
ବିଖଣ୍ଡିତ ଆଜି ଅଖଣ୍ଡ ଭାରତ ଟେକିବ ମୁଣ୍ଡ
ବିନ୍ଧ୍ୟ-ହିମାଚଳ ମଧ୍ୟେ ଉଠିବେ ମୈତ୍ରୀ ଗାନ ।



# ଭବିଷ୍ୟତ : ବର୍ତ୍ତମାନର

● କୈଳାସ ଚନ୍ଦ୍ର ବେହେରା

ବିଶ୍ୱ, ମୁଁ ଆସି ନିସ୍ୱ ହେଲଣି
ଧ୍ୱଂସ ରହିଚି ବାକି
ଲାଂଛିତ, ମୋର ବାଂଛିତ ପ୍ରାଣ
ବକ୍ଷରେ ଅଛି ଡାକି
ମାନବ ଥିଲା ମୋ ପରମ ସୃଷ୍ଟି
ଦାନବ ଆଜି ସେ, ଚରମ ଦୃଷ୍ଟି
ଧ୍ୱସ୍ତ ଧରଣୀ ପାଇଁ
ବିସ୍ତାର କରେ ମୃତ୍ୟୁ ଯାତନା
ନିସ୍ତାର ନାହିଁ ନାହିଁ ॥
ଅସ୍ତ କରିଚି ପ୍ରସ୍ତର ଯୁଗ
ଆଗେଇ ଯାଇଛି ଦୂରେ,
ଆଖିରେ ତା'ର ବିଜ୍ଞାନାଗାର
ଶୂନ୍ୟ ଗଗନେ ଘୂରେ ॥
କେତେ ନିର୍ଭୁଲ ଅଙ୍କ ଥିଲା ଯା କଷି
ବିଶ୍ୱାସର ସ୍ଥାଇତ୍ୱ ମୋର
ତଳକୁ ପଡ଼ୁଛି ଖସି ।

ବିଜ୍ଞ ବୋଲି ସେ ପ୍ରଜ୍ଞା ତା' କହେ
ସଙ୍କୁଚିତ ଏ ଧରା
ଶତ୍ରୁ ଏଠାରେ କେହି ନୁହେଁ, ଏହା
ଭ୍ରାତା ଭଗ୍ନୀରେ ଭରା

କିନ୍ତୁ—ଅଙ୍ଗରୁ ମୋର ବସ୍ତ୍ର ଫେଡ଼ିଲେ
ଅସ୍ଥି ଦେଖିବ କେତେ
କାହା ପାଇଁ ତେବେ ପ୍ରତିହିଂସାର
ଆୟୋଜନ ହୁଲେ ଏତେ ?

ବିଭୀଷଣ ମୁଁ ଯେ ଲଙ୍କଗଡର
ବିଜୟେ ପାରେନା ହସି
ଶଙ୍କାରେ ମୋର ଲଙ୍କା ଗଗନେ
ଉଲ୍‌କା ପଡ଼ୁଛି ଖସି ।

କାନ୍ଦୁଛି ଆହା କାସ୍ତ୍ରା ବିବୃକ୍ଷ
ବାନ୍ଧିଲା ବେଳେ ଗାଣ୍ଡ
ଉଡ଼ିଯିବନ ତ ପବନ ସୁଅରେ
କେତେ ପବନର ଭଡ଼ !!

ବାଇବେଲ ବେଦ କୋରାନ କଣ୍ଠେ
ଗୋଟିଏ ମାତ୍ର ବାଣୀ
ହିଂସାରେ ଉନ୍ମତ୍ତ ହୁଏ ଯେ
ଗାତ୍ର କାହାର ହାଣି ।

ମୁହେଁ ସେ ମଣିଷ ଶିଶୁ
କହିଗଲେ ପରି ରାମ ରହିମ୍‌
ଜୋହରାଷ୍ଟ୍ର, ଯୀଶୁ ।
ତଥାପି ତାହାଙ୍କ ପ୍ରସୁତି ଗୃହେ
ରକ୍ତର ହୋଳି ପାଇଁ ?
ସୀମାର ବୁକେ, ଚିତ୍କାର ହେଇ
ଶୁଭୁଅଛି ରହି ରହି ।
ସହି ମୁଁ ପାରେନା ଯେଉଁ ଅସ୍ତ୍ରର ଓଜନ
କାହାର ବିନାଶ ସକାଶେ ରଖିଛୁ
ତତେ ସେ କରିବ ଭୋଜନ ।

ଯେଉଁ ବିଜୟର ଆଶାରେ ବସିଛୁ
ନିର୍ବୋଧ ଆରେ ଟାକି
କି ସୁଆଦ ଅଛି ବୁଝିଆ' ଘୁରି
ହିରୋସୀମା, ନାଗାସାକି ।

ଡ଼ିଆନାଙ୍କୁ ଡ଼ିଆନାଙ୍କରେ ଅନ୍ତରା

ଦୁର୍ଯ୍ୟୋଧନର ଦଳ
କୁରୁକ୍ଷେତ୍ରର ରଣ ତାଣ୍ଡବ
ଖଟାଇ ଯନ୍ତ୍ର ବଳ
ଛୁଟିଲେ ରକ୍ତ ନଈ ।

ଘର ଖର ହବ ଏଥରର ସୁଅ
ପାର ହବାପାଇଁ ପାଇବୁନି ପୁଅ
କହୁ ରଖୁଚି ମୁଁ, କହିଯିବ ସବୁ
କେହି ପାରିବନି ରହି;
ଛୁଟିଲେ ରକ୍ତ ନଈ ।

ଜଳଯାଏ ଜଳଯାଏ······
ଜଳଯାଏ ମୋର ଆଶାର ଆକାଶ ଆହାରେ,
ବଳଯାଏ ଦୁଃଖ କେହିକେ ନାହିଁମୋ ସାହାରେ ?
ଅଛ ଯଦି ଯୋଗୀ ସନ୍ତାନ କିଏ
ଆଗୁରେ ଆଜମୁଁ ତୁମ ନାମ ନିଏ
ଉଡ଼ା ମୋ ଆକାଶ ସାଗ ।

ଯୁଗେ ଯୁଗେ ଯାହା
ଉଡ଼ାଏ ଘରଚ
ମୈତ୍ରୀ—ଶୁଭ୍ର ପାଗ
ବକ୍ଷରେ ମୋର ଇଗଲ
ମେଲିଛୁ ପକ୍ଷ
ଖସାଇ ନଅରେ, ବସାଇ ଦଅରେ
ଶାନ୍ତି-ବୋଇତ, କପୋତ ଲକ୍ଷ ଲକ୍ଷ ।

●

# ହେ ଆଗ୍ରର୍ପଥ

● ଶ୍ରୀ କିଶୋର ଚନ୍ଦ୍ର ମହାନ୍ତି

ଏ ପୃଥିବୀ ଜନ୍ମନେଲା
ଶୂନ୍ୟତାରେ ମହାଶୂନ୍ୟତାରେ
ସରୀସୃପ ଜୀବଜନ୍ତୁ
ଏ ମଣିଷ, ଭିନ୍ନ ଯାର ସ୍ୱର
ପ୍ରଳୟର ପରେ ପୁଣି
ସଭ୍ୟତାର ନୂତନ ଦିଗନ୍ତ
କିଏ ଜାଣେ ଏ ସଭ୍ୟତା
ହଜିଯିବ ତୁମ ଆମ
ଦିଗହୀନ କଳ୍ପନା ସେକରେ
ଠିକ ଠିକ ତ ଗ୍ରମାନେ
ଏଇମିତି ଘୂରୁଁଥିବେ
ଜଳୁଥିବ ସବୁଜ ପୃଥିବୀ
ଜଳୁଥିବ ସବୁଜ ପୃଥିବୀ
ଜଳୁଥିବେ
ଯେତେ ସବୁ ରେଗନ ଆଉ
ଗୋର୍ବାଚେଭମାନେ
ଜଳୁଥିବ ଏ ସାଗର
ନଈ ଯିଏ ଫୁଲଝରେ
ଆକାଶର ଚନ୍ଦ୍ରମାଟିଏ ଖାଇ ।
ସତେ କ'ଣ ଜଳିମିବ ଏ ପୃଥିବୀ ?
ଏ ପୃଥିବୀ ଆମେ ଯାକୁ ଏତେ ଭଲ ପାଉ ?
ସତେ କ'ଣ ଜଳିଯିବ ଏ ସଭ୍ୟତା !
ଏ ସଭ୍ୟତା ଆମେ ଯାର କୃତିପାଇଁ ଏତେ ଗର୍ବ କରୁ ??
ନାଁ ନାଁ ଭାବିବାକୁ ଭଲଲାଗେ ନାହିଁ
ଗାନ୍ଧୀ ତୁମେ ଜନ୍ମନିଅ
ସପ୍ତଦ୍ୱୀପେ
ସପ୍ତସ୍ୱରେ କହିଯାଅ
ଧର୍ମଗୋଷ୍ଠୀ ଜାତିବର୍ଣ୍ଣ

ସଂଭିଧାନରେ ମଣିଷ ମଣିଷ
ଅନ୍ୟ ନାମ ଯେ ଉ ନୁହେଁ
ଅଭିମାନ ଗର୍ବ ଅହଂକାର
ତମେ ତ ଦେଖିଛ ଖାଲି
ପ୍ରୀତି ଆଉ ପ୍ରେମର ମଣିଷ
ତମେ ତ ଦେଖିଛ ଖାଲି
ସ୍ୱାର୍ଥପର ସ୍ପର୍ଦ୍ଧିତ ମଣିଷ
ତମେ କେବେ ଦେଖି ନାହିଁ
ଆଣବିକ ବିସ୍ଫୋରଣ
ଖର୍ବିତ ମଣିଷଟିଏ
କେତେ ଅସହାୟ ସତେ
ଧ୍ୱଂସର ପାଉଁଶ ତଳୁ
ଉଠିଆସି ଶୂନ୍ୟତାକୁ ଚାହେଁ ।
ଚନ୍ଦ୍ର ଯହିଁ ଲୋଟିପଡ଼ି
ଖୋଜୁଥାଏ କଇଁଫୁଲଟିଏ
ସୂର୍ଯ୍ୟ ଯହିଁ ନଇଁପଡ଼ି
ଆଲିଙ୍ଗନ ମାଗୁଥାଏ
ଶ୍ରୀହୀନ ଧୂସର ପୃଥିବୀ
ଇଚ୍ଛାବଶ ନପାଇ ନେ
ପାଉଁଶର ବେଦୀ ତଳେ
ଶୋଇ ଶୋଇ ଅଶ୍ରୁ ଝାରୁଥାଏ
ଲିଳିପୁଟ୍ ମଣିଷଟି
ଅଷ୍ଟବକ୍ର ଦୃଷ୍ଟିଭଙ୍ଗି
ଜୁଲୁ ଜୁଲୁ ଚାହିଁ ରହିଥାଏ
ନିଜ କଣ୍ଠସ୍ୱର ଯେବେ
ଚିହ୍ନିପାରେ ନାହିଁ ।
ଆମେ କ'ଣ ସଜାଡ଼ିବା
ଫୁଲହାର ଫୁଲତୋଡ଼ା
ସେ ଆଗାମୀ ମଣିଷର ପାଇଁ
ଆଜି ଠାରୁ ଆମେ କ'ଣ

ନିର୍ମାଣିବା ଅଭଙ୍ଗା କୋଣାର୍କଟିଏ
ଯାଗ୍ରେଚ୍ଛିବା ସେ ସଭ୍ୟତା
ମାନେ ଯାର ନାହିଁ ??
ଏ ଏକ ପ୍ରଶ୍ନବାଚୀ
ତୁମପାଇଁ ମୋ ପାଇଁ
ଆଜଯେତେ ଅନାଗତ ପାଇଁ
ଏ ଏକ ପ୍ରଶ୍ନବାଚୀ
ତମେ ସବୁ ଦ୍ରୋଣାଚାର୍ଯ୍ୟ ପାଇଁ ।
କାହିଁକି ଶିଖାଅ ତମେ
ସମ୍ମୋହନୀ ବ୍ରହ୍ମବିଦ୍ୟାମାନ
କାହିଁକି ବା କାଟିନିଅ
ବୃଦ୍ଧାଙ୍ଗୁଷ୍ଠି ଖାଣ୍ଟୁ କାପୁରୁଷ ?
ତମେକି ପାରିବ ନାହିଁ
ଏ ଧୂଷର ମାଟିପରେ
ଗୁଞ୍ଜିଦେଇ ସବୁଜ ଗାଲିଚ୍ଛ ?
ତମେ କି ପାରିବ ନାହିଁ ଫୁଲ ଓଠେ ରଙ୍ଗଟିକେ ଦେଇ
ତରଳାଇ ଅକର୍ମି ପଥର
ମମତାର ସ୍ୱର୍ଣ୍ଣ ଟିକେ ମାଖି
ତମେ କି ପାରିବ ନାହିଁ
ହୃଦୟର ଭୂଗୋଳକୁ ବଦଳାଇ ଦେଇ ?
ବିଷକଣ୍ଠ ପରି ତୁମେ ପିଇଯାଅ
ମଣିଷର ଯେତେକଟୁ ପାପ
ଅଗସ୍ତିର ସ୍ପର୍ଦ୍ଧା ନେଇ
ଶୋଷିନିଅ ବିକ୍ଷୁବ୍ଧ ସାଗର ଆଜ
କଳଙ୍କିତ ଅନ୍ଧକାର ଯେତେ
ହେ ଆଚାର୍ଯ୍ୟ
କର୍ମଠର ମଣିଷର ତମେ ହିଁ ତ ସ୍ରଷ୍ଟା
ଅର୍ଜୁନର ଦୁର୍ଜୟ ଗାଣ୍ଡିବ
ଧୂଳିତଳେ ପଡ଼ିଥାଉ
ଅସହାୟ ହୋଇ ।

# ଶାନ୍ତି ପାଇଁ ଆହ୍ୱାନ

● ସୁରେଶଚନ୍ଦ୍ର ଦାଶ

ଏ ବିଶ୍ୱ ଆମ ଘର
ଆମେରେ ତା'ର ପରିବାର
ଯେତେ ଆମେସବୁ ବାସକରୁ ଏଥି
ସବୁ ବଂଶଧର ତାହାର । ୧ ।

ଏ ବିଶ୍ୱ ଜନନୀ ଆମର
ଆମେରେ ସନ୍ତାନ ତାହାର
ଏ ଜନମଭୂଇଁ ସୁଖଶାନ୍ତି ପାଇଁ
ଜନ୍ମ ସୃଷ୍ଟିରେ ଆମର । ୨ ।

ଆମେରେ ମାନବ ବିଶ୍ୱର
ଅମୃତ ସନ୍ତାନ ମାଟିର
ମାଟି ଚଷି ଶସ୍ୟ ଉପୁଜାଇ ଆମେ
ଯୋଗାଉଛୁ ବିଶ୍ୱେ ଆହାର । ୩ ।

ଆମେରେ ମାନବ ବିଶ୍ୱର
ମାନବ ଜାତି ନାଁ ଆମର
ବିଶ୍ୱେ ଏଣେତେଣେ ରହି ନାନାସ୍ଥାନେ
କହୁଁ ଆମେ ନାନା ଜାତିର । ୪ ।

ବିଶ୍ୱ ଆମ କ୍ରୀଡ଼ାପ୍ରାନ୍ତର
ଆମେ ତାହାର ଖେଳୁଆଡ଼
ଦେଶେ ଦେଶେ ମିଳି ହସି ଖେଳି ବୁଲି
ଆଣିବୁ ଭ୍ରାତୃତ୍ୱ ବିଶ୍ୱର । ୫ ।

ବିଶ୍ୱ ରଙ୍ଗଭୂଇଁ ଆମ୍ଭର
ଆମେସବୁ ତା' କଳାକାର
ସେ ରଙ୍ଗ ଭୂଇଁରେ ମିଳମିଶି ଆମେ
କରିବୁ କଳାର ପ୍ରସାର । ୬ ।

ଆମେ ଶ୍ରେଷ୍ଠଜୀବ ସୃଷ୍ଟିର
ସୃଷ୍ଟିରକ୍ଷା ଧର୍ମ ଆମର
କର୍ମ ଆମର ଉନ୍ନତି କରିବା
ଆପଣାର ଆଉ ଅନ୍ୟର । ୭ ।

ଏ ବିଶ୍ୱ ସ୍ୱରଗ ଆମର
ଆମେରେ ସ୍ୱର୍ଗର ଅମର
ଆମେରେ ଆଣିବୁ ଶାନ୍ତି, ମୈତ୍ରୀ
ପ୍ରଗତି ଆମ ଏ ବିଶ୍ୱର । ୮ ।

ମିଳମିଶି ଆମେ ସକଳ
ଚଳାଇ ଅହିଂସା ଅସ୍ତ୍ର
ହିଂସା ବିରୁଦ୍ଧେ ରଚିବୁ ସଂଗ୍ରାମ
କଲ୍ୟାଣ ପାଇଁ ବିଶ୍ୱର । ୯ ।



# ଯନ୍ତ୍ରଣା ଜର୍ଜରିତ ଜୀବନର
# ଅନ୍ତିମ ସ୍ୱର

● ଦୁର୍ଯ୍ୟୋଧନ ସ୍ୱାଇଁ

ବାଲ୍ମୀକି କଳ୍ପିତ ପୁରାଣ କଥାସ୍ଥରେ
କୁମ୍ଭକର୍ଣ୍ଣ-ଫସଲ ଆଜ ବଂଚିପାରୁନାହିଁ
ହେଲେ କୁମ୍ଭକର୍ଣ୍ଣ ନିଦ ବୀଜ-ଫୁଲ ସିମେଇ ଯାଇଛ
ଭାରତର ଶିକ୍ଷା କ୍ଷେତ୍ରେ ବିଚର୍ଚ୍ଚିତ ମଧ୍ୟାହ୍ନ,
ଓଡ଼ିଶାର ଶିକ୍ଷାକ୍ଷେତ୍ର ମାଡ଼ିଅଛି କୁମ୍ଭକର୍ଣ୍ଣ ଘାସାଡ଼ିଚଡ଼ା ନିଦ୍ରା ।

ସେମାନେ କହୁଛନ୍ତି/ତାରାମାନେ ଆକାଶରେ ଦେଖୁଛନ୍ତି
ସେ ଦେଶ ସଭ୍ୟ, ସୁଶିକ୍ଷିତ ଓ ସମୃଦ୍ଧ
ଯେଉଁ ଦେଶ ଶିକ୍ଷାମାନ ଅତ୍ୟନ୍ତ ଉନ୍ନତ ।
ଶିକ୍ଷା ବଗିଚାର ମାଳୀ ଦାନା ବିନା ବାସହୀନ ହେଲେ
ବଗିଚାର ଗୁଚ୍ଛ ଫୁଲ ସୁରଭିତ ହେବନାହିଁ
ବରଂ ନଦୀବନ୍ୟା ସମ ସମାଜର ସ୍ରୋତ ଚାରିଦେବ ।
ଶିକ୍ଷା ମନ୍ଦିର ଖରା ବର୍ଷା ଶୀତରେ ସିଝିଲେ, ଭିଜିଲେ/ଥରିଲେ
ଏ ଜାତିର ଶ୍ରେଷ୍ଠ ସୃଷ୍ଟି ଗଢ଼ାହେବ। ବ୍ରେନ୍ ଫେଲ୍ ଯାତ୍ରୀ
କେନ୍ଦ୍ରୀୟ ନବୋଦୟ ମାଧ୍ୟମିକ ଶିକ୍ଷା ଖାଲି ପାତର ଅନ୍ତର ।
ଓଡ଼ିଶାର ଶିକ୍ଷା ଆଖି କଥାରରେ ବାଲୁଆର
ଆଖୁଖିଆ ଖାଲି ଅଦଳ ବଦଳ/ଅଇଁଠା ଅଇଁଠା
ଏଣୁ ଜ୍ଞାନଧନ ବୃଦ୍ଧି ଅଳୀକ/ଅସତ୍ୟ ସତତ
ଶିକ୍ଷା ପଦ୍ଧତି ଆଜ ବଣ୍ଣ, ମାନସରେ ଭସ୍ମାସୁର ।

ଏ ଜାତି ନିର୍ମାତା ଆଜି ଟୋକି ପ୍ରଥା ତଳେ/ଅନ୍ଧ ଭବିଷ୍ୟତ ଗର୍ଭେ
ଲୁହ ଲହୁ ପ୍ରାଣ ଢାଳି ଶିଶୁ ଉଠେ
ମୁଠାଏ ହସ ଫୁଟାଇବା ପାଇଁ ଶିକ୍ଷା ଗର୍ଭ ହାଣିଅଛି
"ଅବୈତନିକ ଶିକ୍ଷା" ମାଧ୍ୟମିକ ଶିକ୍ଷାକ୍ଷେତ୍ରେ ସ୍ପର୍ଶୀ
ପ୍ରମାଣ ଜଳୁଛି ଏକାଧିକ ସୂର୍ଯ୍ୟର ମହାସଙ୍ଘ ଆକାଶରେ
ହଳାସିମା, ଚରୁଲତା, ଶାନ୍ତି, ବାନାମ୍ବର, କହ୍ନୁ, ବ୍ରଜ
ଆଦି ଭାଇ ଭଉଣୀଙ୍କ ନଶ୍ୱର ଜୀବନକୁ ନେଇ ।

ଶିଶୁ ଶିକ୍ଷା ବିଳମ୍ବିତ ଯୁଗ ଯୁଗ ପାଇଁ
କିନ୍ତୁ ସେପାରିକୁ ଯିବା ଶ୍ଳଥଚର୍ମା ପୌଢ଼ ବୃଦ୍ଧବୃଦ୍ଧୀ
ବିସ୍ଫାରିତ ଆଖିରେ ରାତି ଦଶଟାରେ ଖୋଲୁଛନ୍ତି 'ମଧୁ ବର୍ଣ୍ଣବୋଧ'
ଅମଲ୍ ସାଙ୍ଗକୁ ବଡ ସିନା ସଲମୀରେ ଦ୍ରୋଣାଚାର୍ଯ୍ୟ ବଂଶଧର
ପାଏନାହିଁ ତା'ର ପ୍ରାପ୍ୟ, ମାସ ବର୍ଷ ଗଡ଼ିଯାଏ
ତେଲ ଲୁଣ ସଂସାରରେ ମୃତ୍ୟୁର ଯନ୍ତ୍ରଣା ଖାଲି
ପେଟ ପିଠି ଅସ୍ଥି ଗଣେ, ଧଳାଗଛ ଆଜୀବନ ବସନ୍ତକୁ ଛୁଏଁ ।

ଘାସପରି ବଞ୍ଚିବାପାଇଁ ଆଶା ଆଞ୍ଜୁଳା ଆଞ୍ଜୁଳା
ଜୀବନର ଦାନକିଆ ହାଟ କିଣା ବିକା ସରିବ ନିଶ୍ଚୟ
ତଥାପି ଦୁନିଆଁରେ ଜଣକୁ ମାରି ଅନ୍ୟ ଜଣେ ବସ୍ତାରେ କ୍ଷମତା
କର୍ମଠାରୁ ବଳି ନାହିଁ ଅସରନ୍ତି ଧନ, ମୂଲ୍ୟ ଅମୂଲ୍ୟ ତା'ର ।

ନୁହେଁ ମୁହିଁ ଅଭିମନ୍ୟୁ ପଞ୍ଚୁପାଣ୍ଡବ ପ୍ରତାପ
କୌରବର ଶପ୍ତରଥୀ ବ୍ୟୂହ ନାହିଁ ମୋ ଜୀବନ ପାଇଁ
କିନ୍ତୁ ପଲ୍ଲି ପଲ୍ଲି ଘାତକ ବଧାରେ ବଞ୍ଚିବା ସମୁଦ୍ରର ଢେଉ ଗଣାପରି
କେଉଁ ମୁହୂର୍ତ୍ତରେ ନାଟକର ଯବନିକା ପଡ଼ିଯିବ ସବୁ ସ୍ୱପ୍ନର
ସଉଧ ।

ଚକ୍ଷୁଦାନ/ଜ୍ଞାନଦାନ ଏଠି ରାଜାଙ୍କର ପକ୍ୱ ଫସଲରେ ମହ୍ନଦଆ
ଆଲୋକ ବର୍ତ୍ତିକା ଜାଳି ଜଳିଯିବା କୁସୁମ ସୁରଭି
ନ୍ୟାୟର ପସରା ଧରି ମହି ରାସ୍ତାଦେଇ ଥରେ ଚାଲିଗଲେ
ଅଂଧାରି ଫଉଜ ସବୁ କାହିଁ କାହିଁ ଆସିଯିବେ ମାଡ଼ି ।

କପଟ ବଞ୍ଚିବା ମୂର୍ତ୍ତି ତଥା ରଚିଯିବ ଅସରା କାହାଣୀ
ଯନ୍ତ୍ରଣା ବିଦଗ୍ଧ ଜୀବନ ମୋର ଆଖି ଲୁହ ଆଖିମଧ୍ୟେ ମରେ
ସତ୍ୟନିଷ୍ଠ ଆଶା ନେଇ ଯେଉଁ ବିଶ୍ୱେ ମଣିଷ ପାଗଳ
ସେ ବିଶ୍ୱର ସୃଷ୍ଟି ଘରେ ମିଥ୍ୟା କରେ ପ୍ରବଳ ଶାସନ ।

ଅପକର୍ମ ଭିଡ଼ ବାଛେ ବକ ଧାର୍ମିକ ଖାଏ ଅରୁଆ ଚିଙ୍ଗୁଡ଼ି
ବାବାଜୀ/ନମାଜୀ ମୁଖା ପିନ୍ଧି ଧନଗ୍ରନ୍ଥି ଗହଳ ଜମାଏ
ମୁଖା ଖୋଲିଗଲେ ଥରେ ଅସଲ ରୂପ ଦେଇ ଉଠେ ତା'ର
କ୍ଷମତା/ଧର୍ମାନ୍ଧତା ପରଶେଷେ ଗ୍ରାସକରେ ସମାଜ ଆଖିରେ ।

ଥଳ କୂଳ ପାଏନ ଜମା ଖାଲି ନିଶୂନ ଆକାଶ
କାହାକୁ କହିବି ଦୁଃଖ ? ଏଠି ସମସ୍ତେ ଏକ ଏକ ବିଷଧର ସର୍ପ
ପାଖରେ ପ୍ରବେଶ ଅର୍ଥ ଦଂଶନ/ଖେଳଘର ଶେଷ
ଦୁର୍ଲଭ ମଣିଷ ଜୀବନ ଆଜ ଯାଏନାହିଁ ବଞ୍ଚିବାର ସୁଖ ।

ମଣିଷକୁ ହତ୍ୟାକରି ହତ୍ୟାକାରୀ ଛୁଡ଼ ପାଇ ବୁଲେ
ନର୍ଦ୍ଦୋଷ ସେ ବିଚାରକଙ୍କ ବିଚାରର ଅମୁକ ଧାରାରେ
ଲୋକମତ/ବାସ୍ତବତା କବଳେ ନଏ ଅଫିଠା ଫଇଲକୁ ଡେଇଁ
ସନ୍ଧାନ ମଞ୍ଜିଳଯାଏ, ଲୋକଟିର ମୃତ୍ୟୁ କ'ଣ ହେବେ ଅନିଶ୍ଚିତ !
ସେ ସୃଷ୍ଟିକୁ ହତ୍ୟା କ'ଣ କରନାହିଁ କିଏ !!

ଅଙ୍କଟିଏ ଆମେ କଷି ଉତ୍ତର ପାଇବା ମଂଜପୋଡି ବୃକ୍ଷଲାଭ ପରି
କିନ୍ତୁ ହତ୍ୟାକାରୀ ହତ୍ୟାକରି ଧରାହେବ ନାହିଁ
ସବୁ ଓଲଟ ପାଲଟ ଜାପାନ ଓ ଆସାମର ମହାଭୂମିକମ୍ପ
ମରଣ ଯେଉଁଠି ସତ୍ୟ ବଞ୍ଚିବାପାଇଁ ମର୍ତ୍ତ୍ୟ ହେବ ଶ୍ରେଷ୍ଠ ଅଧିକାର

ଭାରତର ମେରୁଦଣ୍ଡ ପଞ୍ଜାବ ଡାକୁଛି ଭିନ୍ନ ଖଲିସ୍ଥାନ ପାଇଁ
ଆସାମ ସମସ୍ୟା ପୁଣି ଦେଇଁ ଉଠେ ଭୁହାଇ ଭୁହାଇ
ଗୁର୍ଖାଲାଣ୍ଡ ମୁଣ୍ଡଟେକେ ଅଶାନ୍ତିର ଝଡ଼ ସେଠି ବହେ
କାଶ୍ମୀର ସୀମାରେ ଶତ୍ରୁ ରଣହୁଙ୍କାର ଦେଇ କଦମ ପକାଏ
ଅନ୍ତଃଦ୍ୱନ୍ଦ୍ୱ ଭାରତର ଐକ୍ୟପକ୍ଷେ ଦୃଢ଼ବନ୍ଧ ସାଜେ
ନାରୀ ଜାତି ପ୍ରତିପଦେ ଧର୍ଷଣର ସାମ୍ନା ହୁଏ ।

ଭୋଗରାଇ ନିଆଁ ହୁଳା / ବାଲିଆପାଳର
ବିଦଗ୍ଧ ଜୀବନରେ ନାହିଁ ଆଉ ଶାନ୍ତି
ଇରାକ ଇରାନ ନିଦ ଗଲାଣି ଉଭେଇ ଯେଠି କ୍ୟାମ୍ପସ ମିଳେନା
ସିଂହଳରେ ତାମିଲ ଯନ୍ତ୍ରଣା ମାପିବାକୁ ବେଳ ପାଉନାହିଁ
ଆଫ୍ରିକାର ଧଳାକଳା ବିଭେଦ ମୁଣ୍ଡକୁ ଛୁଉଁଛି
ରାଜନୀତି ଦଣ୍ଡି ଉଠୁଛି ପଡ଼ୁଛି ଜମା ସମାନ ରହୁନି
ବିରାଡ଼ିର ପିଠାକଳି ହନୁମାଙ୍କଡ଼ ସମାଧାନ କରୁଅଛି ।

ସ୍ୱୈରନାଶ ଖଣ୍ଡବୃତ୍ତି ସୀମାଙ୍କିତ, ଯୁବସୃଷ୍ଟି ଖୋଜେ ମଟବାଡ଼ି
ବୃଦ୍ଧବୃଦ୍ଧା ଲୁହଲହୁ ମାଟିପିଏ, ସଫଳତା ଡ଼ମିର ଫୁଲର
ଧମନୀକ ବୁଝିବ ଗରବର ସ୍ନେହଶ୍ରଦ୍ଧା, ସ୍ୱର୍ଗୀୟ ମମତା ଓ ଦୁଃଖ
ଶାନ୍ତି ନାହିଁ ପ୍ରୀତିନାହିଁ ଧଳା ଗଛେ ଫଳୁଅଛି ଅବସରୀୟ ଭୟ
ସୃଷ୍ଟି କିନ୍ତୁ ପରମାଣୁ ବଜାରରେ ଉଣ୍ଡାଳୁଛି ଜୀବନର ସତ୍ତା ।

ବିପକ୍ଷ ସପକ୍ଷ ଏକାକାର ଏଠି ଗଞ୍ଜେଇ ନିଶାକୁ ଧରି
ଧୂମ୍ରପାନ ନିଷେଧ ଯେଉଁଠି, ଛୁଟିଗଲେ ସେଠି ବାଷ୍ପୀୟ କୁଣ୍ଡଳୀ
ମଦ୍ୟପାନ ମନା କିନ୍ତୁ ମଦ ଭାଟି ଖୋଲିବା ପୂର୍ଣ୍ଣ ସ୍ୱାଧୀନତା
ବିଶ୍ୱ ଚାହେଁନା ଯୁଦ୍ଧ କିନ୍ତୁ ଆମେରିକା ରୁଷ ଦେଉଡ଼ଶୁର ଭାଇବୋହୂ ।

ସବୁ ଆଜି ପ୍ରହସନ ଲୋକ ଦେଖାଣିଆ
ଶୌର୍ଯ୍ୟ ବୀର୍ଯ୍ୟ ଧୈର୍ଯ୍ୟ ସବୁ ହେଲେ ପଥହରା
ତାରକା ଖଚିତ ନଭେ ଥିଲେ ମଧ୍ୟ ସୂର୍ଯ୍ୟ
ଅମା ଅଂଧକାର ଘୋଟିଯିବ ଅପରୂପା ମହାବିଶ୍ୱସାରା ।

ଆର୍ଯ୍ୟବୀର କବିକୁଳ ଆହେ ସ୍ରଷ୍ଟା ! ସୃଷ୍ଟି ପାଇଁ—
ଯୁଗେ ଯୁଗେ ଧରିଥିଲେ ଶ୍ରେଷ୍ଠ ବ୍ରତ
ତେବେସିନା! ଭସମାନ ବିଶ୍ୱବୃକ୍ଷେ ବିରାଜିବ
ପରମ ସୃଷ୍ଟି ବୃକ୍ଷର ମୃଗନାଭି ଫୁଲ ଆଉ ଫଳ ।

ପୂତିଗନ୍ଧ ସମାଜକୁ ଉଖାରିବା ନୁହେଁ ସମୀଚୀନ
ବରଂ ହୃଦଧୋଇ ଆଗଇବା ସର୍ବାଦୌ ଶ୍ରେୟସ୍କର
ବ୍ୟକ୍ତି ଅନୁଭୂତି ଢାଳିଦେଲେ ଜାତି ସ୍ଥିତି ଅଶୁଦ୍ଧ ଅଳୀକ
ବ୍ୟକ୍ତି ତ୍ୟାଗ ଉନ୍ମୁକ୍ତ ହେଲେ ଜୀବନେ ଜୀବନେ
ଜାତି ପ୍ରାଣ ମହକିବ ସବନ୍ଦ ଧରା ଅନୁରାଗେ ।

ଖୁଣ୍ଟ ଆଲୋଚନା/ବିଶ୍ୱ ଅଲମ୍ପିକ ଭ୍ରାତୃତ୍ୱ/ମାନବୀୟ ଧର୍ମ ପ୍ରତି
ବିଶ୍ୱବାସୀ ମମତା ବାନ୍ଧିଲେ ଯୁଦ୍ଧମାନେ ଅପସରିଯିବ
ଶାନ୍ତ ମୈତ୍ରୀ ପ୍ରୀତି ଫଲ୍‌ଗୁ
ବିଶ୍ୱ ମାନସ ରାଜ୍ୟେ ଆଶୁ ବହିଯିବ
ଅଭିଶାପ ପରିବର୍ତ୍ତେ ବିଜ୍ଞାନର ଆଶୀର୍ବାଦ
ହୃଦୟର ପ୍ରତିକୋଣ ଅନୁକୋଣରେ ପ୍ଲାବିବ,
ଦେଶେ ଦେଶେ ବନ୍ଧୁତାର ମାର୍ଗ ଖୋଲିଯିବ ।
ଏଣୁ ବକ୍ତବ୍ୟ କର୍ତ୍ତବ୍ୟ ଯନ୍ଧ
ରେଲ ଧାରଣା ହୋଇ ଧାଇଁଯାଏ
ଶୁଖିବନି ବିଶ୍ୱର ଆଶାନଦୀ ଦୁଃଖ ।
ରାଗ, ହିଂସା, କ୍ରୋଧ ମିଳି ଅହଂରୂପ ନେଲେ
ସ୍ୱର୍ଣ୍ଣମୟୀ ଲଙ୍କାପୁର ଧ୍ୱଂସପରି ମାନବର ସୁନ୍ଦର ସଭ୍ୟତା
ବିବର୍ତ୍ତ/କଳାକନା ପାଲଟିବ ଆଖି ପିଛୁଡ଼ାକେ
ଅନ୍ତିମରେ ବିଶ୍ୱରୂପୀ ପରିବାର ଲୋଡ଼ୁଅଛୁ ମହାନ ସଂହତି
ଦେଖିବାକୁ ଅମୃତ ସନ୍ତାନର ରମ୍ୟ ଲୀଳାଖେଳା ।

ଗର୍ଭିଣୀ ମା' ପୃଥିବୀ ବକ୍ଷେ ଚେନାଏ ହସ ସୃଷ୍ଟି ପାଇଁ
ଅନ୍ୟାୟ କଣ୍ଠ, ଉଦ୍ଧତ ସଙ୍ଗୀନ ରୋଧିବା ପାଇଁ
ଧନ୍ୟ ଗରିବ ସୂର୍ଯ୍ୟରଶ୍ମି ପାଇଲି ସମ
ସବୁଜ ପ୍ରାଣେ ରାମ ରାଜ୍ୟର ପ୍ରୀତି ସନ୍ଦେଶ ଆଣେ—
ଆସୁଛି ଆଗାମୀ କାଲିର ସଫଳ ସୃଷ୍ଟି, ମା' ଗର୍ଭରେ—
ମଣିଷ ଜାତିର ଦୂର ଭବିଷ୍ୟ ମାପେ,
ମହାନ ଗାଥା ଗାଏ, ଦୁର୍ବାର ଶପଥ ନିଏ
ଦୁର୍ବାର ଶପଥ ନିଏ, ବିଜୟ ଟୀକା ଗୃହେଁ ।।

